ହେମେନ୍ଦ୍ର

# ହାସ୍ୟ ପଥିକ...



# ହେମେନ୍ଦ୍ର
# ହାସ୍ୟ
# ପଞ୍ଚକ

(ପାଞ୍ଚଟି ହାସ୍ୟ-ରସାତ୍ମକ ନାଟକର ସମଷ୍ଟି)

ନାଟ୍ୟକାର
ହେମେନ୍ଦ୍ର ମହାପାତ୍ର



ସୁବର୍ଣ୍ଣଶ୍ରୀ ପ୍ରକାଶିନୀ
ବାଲେଶ୍ୱର

# ହେମେନ୍ଦ୍ର ହାସ୍ୟ ପଞ୍ଚକ

(ପାଞ୍ଚଟି ହାସ୍ୟ-ରସାତ୍ମକ ନାଟକ)

ନାଟ୍ୟକାର : **ହେମେନ୍ଦ୍ର ମହାପାତ୍ର**

ସୁନହଟ, ବାଲେଶ୍ୱର, ଦୂରଭାଷ : ୯୮୬୧୩୫୦୯୫୧

*ପ୍ରକାଶକ :* କାଳୀପଦ ପଣ୍ଡା, **ସୁବର୍ଣ୍ଣଶ୍ରୀ ପ୍ରକାଶିନୀ**

ନେଳିଆବାଗ୍, ଶ୍ରୀକଣ୍ଠପୁର, ବାଲେଶ୍ୱର, ମୋ: ୯୪୩୭୦୮୯୨୪୧

ପ୍ରଥମ ସଂସ୍କରଣ: ୨୭ ମାର୍ଚ୍ଚ -୨୦୧୭(ବିଶ୍ୱ ନାଟ୍ୟଦିବସ)

ମୂଲ୍ୟ : ଟ.୯୦/-

---

# HEMENDRA HASYA PANCHAKA

(A collection of Five humorous Play)

**by : Hemendra Mohapatra**

Sunhat, Balasore, Ph.: 9861350951

**Publisher : Kalipada Panda, SUBARNASHREE PRAKASHINI**

Neiliabag, Shrikanthapur, Balasore, Mob : 9437089241

**First Edition** : 27th March-2017(Wrold Theatre Day)

**Price :** Rs. 90 /-

# ଉତ୍ସର୍ଗ

ମୋର ପ୍ରିୟ ନାଟ୍ୟବଂଧୁ ସ୍ୱର୍ଗତ ନୀଳକଣ୍ଠ ସାହୁଙ୍କ
ସ୍ମୃତିରେ....

*- ନାଟ୍ୟକାର*

# ମନକୁ ଯାହା ଆସିଲା

ମଣିଷ ଏମିତି ଏକ ପ୍ରାଣୀ, ଯିଏ ହସିପାରେ ଓ କାନ୍ଦିପାରେ, ଏବଂ ଅନ୍ୟକୁ ହସାଇ ପାରେ କନ୍ଦାଇ ବି ପାରେ । କିନ୍ତୁ ଅଧିକାଂଶ ମଣିଷ ଅନ୍ୟକୁ ହସାଇବା ଅପେକ୍ଷା କନ୍ଦାଇବାକୁ ଅଧିକ ଭଲପାଆନ୍ତି । ଅନ୍ୟର ମୁହଁରେ ହସ ଅପେକ୍ଷା ଆଖିରେ ଲୁହ ଦେଖିବାରେ ସେମାନେ ପାଆନ୍ତି ଅସୀମ ଆନନ୍ଦ । ତଥାପି ଅନେକ ଲୋକଙ୍କ ପାଖରେ ଏହାର ବ୍ୟତିକ୍ରମ ପରିଲକ୍ଷିତ ହୁଏ । ସେମାନେ ନିଜେ ଜଳିପୋଡ଼ି ଯନ୍ତ୍ରଣା ଜର୍ଜରିତ ହୋଇ ଅନ୍ୟର ମୁହଁରେ ହସ ଦେଖି ହସି ଦିଅନ୍ତି, ସେମାନେ ହେଲେ ହାସ୍ୟ କଳାକାର । ଏହି ପରିପ୍ରେକ୍ଷୀରେ ଏ ନାଟକ ସଂକଳନଟି କିଛି ଗୁରୁତ୍ୱ ବହନ କରିଥାଏ ।

ସଂପ୍ରତି ବିଶ୍ୱ ମାନବ ନିକଟରେ ଧନସଂପଦ, ଯଶ, କ୍ଷମତା ସବୁ ଥାଇ ବି ତା' ମୁହଁରେ ଅଫୁରନ୍ତ ହସର ଅଭାବ ସ୍ପଷ୍ଟ ପରିଲକ୍ଷିତ । ସତେ ଯେମିତି ତା' ନିକଟରୁ କିଏ ହସତକ ଲୁଟିନେଇ ତା' କପାଳରେ ବିଷଣ୍ଣ ବିଷାଦର କଳାଛାଇ ଭରି ଦେଇଛି । ହସର ଅଭାବରେ ତା'ର ସବୁ ଥାଇ ବି ସେ ଆଜି ସର୍ବହରା । ଚେନାଏ ହସ ପାଇଁ ସେ ଏଠିସେଠି ହାତ ପାତୁଛି । ତା' ପାଇଁ ପ୍ରେମ, ବିରହ, ବୀର, କାରୁଣ୍ୟର କାହାଣୀ ଅର୍ଥହୀନ ହୋଇପଡ଼ିଛି । ସେ ବାଟରେ ଘାଟରେ, ଘରେ ବାହାରେ, ଗୀତରେ ଗପରେ, ସିନେମାରେ, ମଞ୍ଚରେ ଅପହୃତ ହସକୁ ଖୋଜି ବୁଲୁଛି । ତା'ର ଏ ବିରସ ବ୍ୟାକୁଳିତ ମନ ଓ ହୃଦୟକୁ ମୁଠାଏ ହସ ଯୋଗାଇ ଦେବାପାଇଁ ଏ ହାସ୍ୟପଞ୍ଚକର ଆବିର୍ଭାବ ।

'ଅକଲ ଗୁଡୁମ୍', 'ଅର୍ଦ୍ଧଚନ୍ଦ୍ର ପ୍ରହସନ', 'ବାଃ ବାଃରେ ଫେସନ୍', 'ବାହାବଜାର' ଏବଂ 'ଢାଉକ ସିଂ ଫ୍ରମ୍ ଫାଲତୁ ଟି.ଭି.' ଆଦି ପାଞ୍ଚଟି ନାଟକରେ ସମୃଦ୍ଧ ଏ ସଂକଳନ । ଏସବୁ ନାଟକଗୁଡ଼ିକ ଭିନ୍ନଭିନ୍ନ ସମୟରେ ବାଲେଶ୍ୱରର ଅଗ୍ରଣୀ ନାଟ୍ୟସଂସ୍ଥା 'ସ୍ରଷ୍ଟା' ଦ୍ୱାରା ଓଡ଼ିଶାର ବିଭିନ୍ନ ମଂଚରେ ବାରମ୍ବାର ମଂଚସ୍ଥ ହୋଇ ବେଶ୍ ଆଦୃତ ହୋଇପାରିଛି । ଏଥିରେ ପାଠକୀୟ ତଥା ଦର୍ଶକୀୟ ସ୍ୱୀକୃତି ବହୁଭାବରେ ମିଳି ପାରିଲା ପରେ ଅନ୍ୟ କଳାକାର ଓ ଦର୍ଶକଙ୍କ ଉଦ୍ଦେଶ୍ୟରେ ଏହାର ମୁଦ୍ରିତ ରୂପଟି ପ୍ରସ୍ତୁତ କରାଯାଇଛି ।

ଏହାର ପ୍ରକାଶକାଳରେ ନାଟ୍ୟକାର ଭାବରେ ଦର୍ଶକ, ପାଠକ ତଥା କଳାକାରଙ୍କ ଉଦ୍ଦେଶ୍ୟରେ ଏତିକି କହିବା ନିହାତି ସମୀଚୀନ ହେବ ଯେ, ଏଥିରେ ପ୍ରକାଶିତ କାହାଣୀ, ଚରିତ୍ର, ସଂଳାପରେ କାହାରିକୁ ଉଦ୍ଦେଶ୍ୟମୂଳକ ଭାବରେ ଉପହାସ କରାଯାଇ ନାହିଁ । ଯଦି କାହାରିକି ପ୍ରତ୍ୟକ୍ଷରେ ବା ପରୋକ୍ଷରେ କିଛି କୁହାଯାଇ ଥିବ, ସେଥିରେ ସେ ବିବ୍ରତ ନ ହୋଇ ଏକ ନିରୋଳା ସାହିତ୍ୟର ଚିତ୍ର ଭାବି ଭୁଲି ଯିବେ । ଏହି ପରିପ୍ରେକ୍ଷୀରେ ପ୍ରକାଶକ, ଲିପିକାର, ଅଭିନୟ କରିଥିବା ତଥା ନିର୍ଦ୍ଦେଶନା ଦେଇଥିବା କଳାକାରଙ୍କ ନିକଟରେ କୃତଜ୍ଞତା ଜଣାଇ ଆପଣମାନଙ୍କ ମୁହଁରେ ଟେନାଏ ହସ ଦେଖିବା ନିମନ୍ତେ ଅପେକ୍ଷା କରି ରହିଲି ।

ଅମୋଘ ମହାନ୍ତି

# ଏଥିରେ ଥିବା ନାଟକ

# ଏଥିରେ ଥିବା ଚରିତ୍ରମାନେ

- ଢାଉକ ସିଂ
- ମର୍କଟ ମହାକୁଡ
- ବିଲୁଆ ବିଶ୍ୱାଳ
- ଡକ୍ଟର ହସ୍ତୀ ଶତପଥୀ
- ଘୁଷୁରି ଘୋଷ
- ଷଣ୍ଢ ମହାନ୍ତି
- ଗଧିଆ
- କୁକୁର ଦାସ

# ପ୍ରଥମ ଦୃଶ୍ୟ

ଯେହେତୁ ନାଟକଟି ସଂପୂର୍ଣ୍ଣ ପରିହାସଧର୍ମୀ ତଥା ପ୍ରତୀକାତ୍ମକ; ତେଣୁ ଏହାର ମଞ୍ଚ ଓ ମଞ୍ଚନ ଶୈଳୀ ସଂପୂର୍ଣ୍ଣ ସାଙ୍କେତିକ । କାହାଣୀ ଚରିତ୍ର ସମସ୍ତ କାଳ୍ପନିକ ।

ସମଗ୍ର ମଞ୍ଚକୁ ମୁଖ୍ୟତଃ ଦୁଇଭାଗରେ ବିଭକ୍ତ କରାଯାଉ । ବାମ ଅଞ୍ଚଳ ଏକ ଜଙ୍ଗଲପଥ ଓ ଦକ୍ଷିଣ ଅଞ୍ଚଳ ଏକ ସାଧାରଣ ଅଭିନୟ ମଣ୍ଡପ ଭାବରେ ବ୍ୟବହାର କରାଯାଇପାରେ, ଆବଶ୍ୟକ ସମୟରେ ସମଗ୍ର ମଞ୍ଚକୁ ଗୋଟିଏ ଅଭିନୟ ସ୍ଥଳ ଭାବରେ ମଧ୍ୟ ବ୍ୟବହାର କରାଯାଇପାରେ । ମୋଟାମୋଟି ମଞ୍ଚନ ପ୍ରକ୍ରିୟାରେ ନିର୍ଦ୍ଦେଶକ ସଂପୂର୍ଣ୍ଣ ସ୍ୱାଧୀନ । ମଣିଷ ରୂପୀ ପଶୁଙ୍କୁ ନେଇ ନାଟକଟି ସଂରଚିତ ହୋଇଛି । ତେଣୁ ଚରିତ୍ରଙ୍କ ପୋଷାକ ପରିପାଟୀ ପ୍ରତୀକାତ୍ମକ ହେଲେ ସହଜ ହେବ ।

ପ୍ରଥମେ ଆଲୋକ ଆସେ ସାଧାରଣ ମଣ୍ଡପକୁ, ଯେଉଁଠି ସାମ୍ବାଦିକ ଢାଉକ ସିଂ ମାଇକ୍ରୋଫୋନ୍ ଧରି ସ୍ୱଭାବିକ ଭାବରେ ଦର୍ଶକଙ୍କୁ କହୁଥା'ନ୍ତି ପାଖରେ କେମେରା ଧରି ଫଟୋ ନେଉଥାଆନ୍ତି ଫଟୋଗ୍ରାଫର୍ ଶାଗୁଣା ସାହୁ ।

ଢାଉକ ସିଂ : ଦର୍ଶକବନ୍ଧୁ, ଫାଲ୍‌ତୁ ଟି.ଭି. ପକ୍ଷରୁ ମୁଁ ଢାଉକ ସିଂ ଓ ମୋ କେମେରାମ୍ୟାନ୍ ଶାଗୁଣା ସାହୁ ଆପଣମାନଙ୍କୁ ସ୍ୱାଗତ କରୁଛୁ । ଆସନ୍ତୁ ଆମେ ଆପଣଙ୍କୁ ନେଇ ଯାଉଛୁ ଜଙ୍ଗଲ ଜଗତରେ ଥିବା ପଶୁପାଟଣାକୁ; ଯେଉଁଠାରେ ଏ ତଥାକଥିତ ମଣିଷମାନଙ୍କ ପଶୁ

ରୂପ ଦର୍ଶନ କରିହେବ । ମୁଁ ମୋର କେମେରାମେନ ଶାଗୁଣା ସାହୁଙ୍କୁ ଅନୁରୋଧ କରୁଛି ସେ ଆପଣମାନଙ୍କୁ ତାଙ୍କ କେମେରା ମାଧ୍ୟମରେ ପଶୁପାଟଣାର ଗର୍ବ ଗାରିମା ପ୍ରଦର୍ଶନ କରାଇବେ ।

(ଧୀରେଧୀରେ ଆଲୋକ ବଦଳି ଯାଏ ଦେଖାଯାଏ, କିଛି ପଶୁ ମାଙ୍କଡ଼ ନାମକ ଜୀବଟାକୁ କାନ୍ଧରେ ଥୋଇ ନାଚି ନାଚି ଆସନ୍ତି ।)

ବିଲୁଆ ବିଶ୍ୱାଳ: ଆମର ରାଜା ତୁମର ରାଜା ଆମ ସମସ୍ତଙ୍କ ରାଜା ମର୍କଟ ମୋହନ ମହାକୁଡ଼ -

ଅନ୍ୟମାନେ: ଜିନ୍ଦାବାଦ ।

(ଏମିତି ବାରମ୍ବାର ଜିନ୍ଦାବାଦ ଧ୍ୱନି କରନ୍ତି । ସ୍ୱର ଧୀରେଧୀରେ କମିଆସେ ।)

ଢାଉକ : ଏବେ ଆପଣମାନେ ଦେଖି ପାରୁଛନ୍ତି ବିଲୁଆ ବିଶ୍ୱାଳଙ୍କ ନେତୃତ୍ୱରେ ପଶୁପାଟଣାର ପଶୁ ସାଧାରଣ ତାଙ୍କ ନୂଆ ରାଜା ମର୍କଟମୋହନ ମହାକୁଡ଼ଙ୍କୁ ପଶୁପାଟଣାର ପଶୁପତି ଭାବରେ ଅଭିଷିକ୍ତ କରିବାକୁ ଯାଉଛନ୍ତି । ଏହି ପ୍ରସଙ୍ଗରେ ଆସନ୍ତୁ ଭେଟିବା ମହାରାଜା ମିଷ୍ଟର ମର୍କଟ ମହାକୁଡ଼ ଓ ମନ୍ତ୍ରୀ ଶ୍ରୀଯୁକ୍ତ ବିଲୁଆ ବିଶ୍ୱାଳଙ୍କୁ । Congratulation ଶ୍ରୀଯୁକ୍ତ ମର୍କଟ ମହାକୁଡ଼ ଆପଣ ଏ ପଶୁପାଟଣାର ରାଜା ଭାବରେ ନିର୍ବାଚିତ ହୋଇଛନ୍ତି ।

ମର୍କଟ : ଧନ୍ୟବାଦ ।

ବିଲୁଆ : ମହାରାଜା ଆମର ନିର୍ଦ୍ୱନ୍ଦ୍ୱରେ ନିର୍ବାଚିତ ହୋଇଛନ୍ତି ।

ଢାଉକ : ନିର୍ଦ୍ୱନ୍ଦ୍ୱରେ ?

ମର୍କଟ : ଆଉ, ମୋ ସହିତ ନିର୍ବାଚନ ଲଢ଼ିବାକୁ କେହି ସାହସ ତ କଲେନି ।

ବିଲୁଆ : କିଏ ଆଉ ଲଢ଼ିବ, ଏଠି ଆଉ ସେମିତି ଲଢୁଆପଶୁ ଆଉ ଅଛି କିଏ ? ସିଂହ ଥିଲେ ସିଂହ ରାଜା ହୋଇଥା'ନ୍ତେ । ଏ ବଣରେ ସିଂହ ନାହାନ୍ତି କି ବାଘ ବି ନାହାନ୍ତି ।

ମର୍କଟ : ଭାଲୁ ବି ନାହାନ୍ତି ।

ଢାଉକ : ହାତୀ ତ ଅଛନ୍ତି ।

ବିଲୁଆ : ହଁ ହାତୀ ଅଛନ୍ତି । ସେ ସଫାସଫା ମନା କରିଦେଲେ ଯେ ରାଜନୀତିରେ ପଶିବେନି ।

ମର୍କଟ : ତେଣୁ ମୋ ଛଡ଼ା ଆଉ ସେମିତି ପାୱାରଫୁଲ୍ ଲିଡ଼ର ଆଉ ଅଛି କିଏ ?

ବିଲୁଆ : ଅବଶ୍ୟ ଅଭିଜ୍ଞତା ଦୃଷ୍ଟିରୁ ମୋର ଦକ୍ଷତା ଥିଲା ।

ମର୍କଟ : ତମେ ତ ରାଜି ହେଲନି ।

ବିଲୁଆ : ନା ନା ମୋତେ ରାଜପଦ ସାଜିବନି, ତା'ଛଡ଼ା ରଜାର ପାୱାର କାହିଁ, ସବୁ ପାୱାର ତ ମନ୍ତ୍ରୀ ହାତରେ । ତେଣୁ ମନ୍ତ୍ରୀ ହେଇ ରହିବାକୁ ମୁଁ ଇଚ୍ଛା କଲି ।

ଢାଉକ : ଆପଣ ପଶୁପାଟଣାରେ କ'ଣ କରିବାକୁ ଚାହାନ୍ତି ?

ମର୍କଟ : ଆମେ ତ ଆଉ ମଣିଷ ନୁହଁ ଯେ ଏଇଆ କରିବୁ, ସେଇଆ କରିବୁ ବୋଲି କେବଳ କହି ବୁଲିବୁ ।

ବିଲୁଆ : ଆମେ କଥାରେ ନୁହେଁ କାମରେ ବିଶ୍ୱାସ କରୁ ।

ମର୍କଟ : ଦେଖନ୍ତୁ ଆମେ କ'ଣ କରୁଛୁ ।

ଡାଉକ : ଆପଣ ଆମ ଦର୍ଶକମାନଙ୍କ ଆଗରେ ଆପଣଙ୍କର ବହୁମୂଲ୍ୟ ମତାମତ ଦେଇଥିବାରୁ ଧନ୍ୟବାଦ । ତ ଇଏଥିଲା ପଶୁପାଟଣାର ରାଜା ଓ ମନ୍ତ୍ରୀଙ୍କ ମତାମତ । ଆମର ପରବର୍ତ୍ତୀ କାର୍ଯ୍ୟକ୍ରମ ଦେଖିବା ପୂର୍ବରୁ ନେଇଯିବା ଗୋଟେ ଛୋଟ Commercial Break.

× × ×

ଡାଉକ ସିଂ : ଆସନ୍ତୁ ଯିବା ପଶୁପାଟଣାର ରାଜରାସ୍ତାକୁ, ଯେଉଁ ରାସ୍ତାରେ ମହାମହିମ ପଶୁପତି ମର୍କଟ ମୋହନ ମହାକୁଡ଼ ଓ ତାଙ୍କର ଅତି ବିଶ୍ୱସ୍ତ ମନ୍ତ୍ରୀ ବିଲୁଆ ବିଶାଳଙ୍କ ସହିତ Morning Walkରେ ଯାଉଛନ୍ତି ।

(ଦେଖାଯାଏ ମର୍କଟ ଓ ବିଲୁଆ ମଣିଷ ଠାଣିରେ Morning Walk କରୁଥା'ନ୍ତି ।)

ମର୍କଟ : ଆଚ୍ଛା ମିଷ୍ଟର ବିଶାଳ ।

ବିଲୁଆ : ଜୀ ସରକାର ।

ମର୍କଟ : ଆଚ୍ଛା ମିଷ୍ଟର ବିଶାଳ ।

ବିଲୁଆ : ଜୀ ସରକାର ।

ମର୍କଟ : ଏଇଟାକୁ କ'ଣ ମର୍ଣିଂ କହନ୍ତି ?

ବିଲୁଆ : Yes Sir.

ମର୍କଟ : କାହିଁକି ଆମେ ଯାକୁ evening କହିଲେ କ୍ଷତି କ'ଣ ?

ବିଲୁଆ : Nothing sir.

ମର୍କଟ : Night କହିଲେ ?

ବିଲୁଆ : Very good sir.

ମର୍କଟ : ତା'ହେଲେ ଆଜିଠାରୁ Morningକୁ night କୁହାଯାଉ ।

ବିଲୁଆ : Thank you sir. ହେ media man ଢାଉକ ସିଂ, please declare କର ଯେ ପଶୁପାଟଣାର ପଶୁପତି ମହାମହିମ ମର୍କଟ ମୋହନ ମହାକୁଡ଼ ଅତ୍ୟନ୍ତ ସ୍ୱାହସର ସହିତ Morningଟାକୁ Night କରିବାର ସିଦ୍ଧାନ୍ତ ନେଇଛନ୍ତି ।(ତାଳି ମାରିଲେ)

ମର୍କଟ : ବାସ୍ତବିକ ମିଷ୍ଟର ବିଶ୍ୱାଳ you are veryମାନେ very very...

ବିଲୁଆ : ମାନେ ପାରିବାର ।

ମର୍କଟ : Yes. (ଦେଖନ୍ତି ମୁକ୍ତାମାଳଟେ ତଳେ ପଡ଼ିଛି, ଉଠାଇଲେ) ଆରେ ଇଏ କ'ଣ ?

ବିଲୁଆ : ଦେଖି ଦେଖି ମଣିମା ।

ମର୍କଟ : ଇଏ ତ ମୁକ୍ତାମାଳ ପରି ଲାଗୁଛି ।

ବିଲୁଆ : ହଁ, ମଣିମା ଇଏ ଖାଣ୍ଟି ମୁକ୍ତାମାଳଟିଏ ।

ମର୍କଟ : ଏମିତି ରାସ୍ତାଟାରେ ମୁକ୍ତାମାଳ !

ବିଲୁଆ : ନା, ଏଥିରେ ବୋମ୍ ଫମ୍ କିଛି ନାହିଁ । ଏହାକୁ ସନ୍ଦେହ କରାଯାଇ ନ ପାରେ ।

ମର୍କଟ : ତେବେ ଏହାକୁ କ'ଣ କରାଯାଇପାରେ ?

ବିଲୁଆ : ସାର୍ ଏ ମୂଲ୍ୟବାନ୍ ତଥା ସୁନ୍ଦର ମୁକ୍ତାମାଳଟି ମଣିମାଙ୍କ ବେକରେ ପଡ଼ିଲେ ଆହୁରି ସୁନ୍ଦର ଓ ମୂଲ୍ୟବାନ ହୋଇଯିବ ।

ମର୍କଟ : ଅବଶ୍ୟ ।

ବିଲୁଆ : ପିନ୍ଧି ନିଅନ୍ତୁ ସାର୍ ।

ମର୍କଟ : ପିନ୍ଧି ନେବି, କିଏ କାଲେ କ'ଣ କହିବ ।

ବିଲୁଆ : କିଏ ଆଉ କହିବ, ଯଦି କହିବ ସେ ବଦ୍‌ମାସ ମଣିଷଟା କିଛି କହିପାରେ । ତା' କଥାକୁ ଆମେ ଶୁଣିବାକୁ ବାଧ୍ୟ ନୋହୁଁ ।

ମର୍କଟ : ସେହି ମଣିଷଟାକୁ ତ ପ୍ରାଣେ ଭୟ, ସେ ଯେମିତି ଈର୍ଷାଳୁ ସେମିତି ଅସହିଷ୍ଣୁ । ହସି ଦବ, ପରିହାସ କରିଦେବ ଥଟ୍ଟାରେ ଥଟ୍ଟାରେ କହିଦବ, ଦେଖରେ ଦେଖ ବାନର ଗଳାରେ ମୁକ୍ତାମାଳ ।

ବିଲୁଆ : ମଣିଷ ଆପଣ ମଣିଷଟାକୁ ଡରୁଛନ୍ତି, ସିଏ ପରା ଆପଣଙ୍କ ଠାରୁ ସୃଷ୍ଟି ।

ମର୍କଟ : ଛାଡ଼ ଛାଡ଼ ସେଟା କୃତଘ୍ନଟା । ଶୁଣ, ଗୋଟେ କାମ କରିବା । ଆମେ ଏ ମାଳାଟିକୁ ଜଣେ ବିଶିଷ୍ଟ ଅତି ବିଶିଷ୍ଟ ପଶୁ ଗଳାରେ ପିନ୍ଧେଇ ଦେବା ।

ବିଲୁଆ : ହଁ ଯେ, ବିଶିଷ୍ଟ ଅତି ବିଶିଷ୍ଟ... ହେଲେ ସେମିତି ପଶୁ ଆମ ପଶୁପାଟଣାରେ କିଏ ଅଛି ?

ମର୍କଟ : ଆଚ୍ଛା ମିଷ୍ଟର ବିଶାଳ ଆମେ ଯଦି ଏ ମାଳାଟିକୁ ବିଶିଷ୍ଟ ସାହିତ୍ୟିକ ତଥା ଖ୍ୟାତନାମା ଗବେଷକ ଡକ୍ଟର ହସ୍ତୀ ଶତପଥୀଙ୍କ ଗଳାରେ ଲମ୍ବେଇ ଦଉ ।

ବିଲୁଆ : Yes Yes ସାର୍ Yes. ଚମତ୍କାର decision, ହସ୍ତୀ ଶତପଥୀଙ୍କ ଭଳି ଜ୍ଞାନୀ, ଗୁଣୀ, ବିଦ୍ୱାନ ପଣ୍ଡିତ ଆମ ପଶୁପାଟଣାରେ ଆଉ ଅଛି କିଏ ?

ମର୍କଟ : ମୁଁ ଆପଣଙ୍କ ଠାରୁ ଏମିତି ଏକ ସମର୍ଥନ ସୂଚକ ମନ୍ତବ୍ୟ ଆଶା କରୁଥିଲି, ମିଷ୍ଟର ବିଶାଳ ।

ବିଲୁଆ : (ହସି) ମହାମନ୍ତ୍ରୀ ବିଲୁଆ ବିଶାଳଟି । ଏମିତି ତେଲମରା ମନ୍ତବ୍ୟ ଆମ ମୁଣ୍ଡରେ ପ୍ରଚୁର ଗଚ୍ଛିତ ଅଛି ହଜୁର ।

ମର୍କଟ : ତା' ହେଲେ ଚାଲ ଯିବା ଡକ୍ଟର ହସ୍ତୀ ଶତପଥୀ ମହୋଦୟଙ୍କ ନିକଟକୁ ।

ବିଲୁଆ : ଚାଲନ୍ତୁ ସାର୍ । (ଚାଲୁ ଚାଲୁ ହଠାତ୍ ଅଟକି ଯାଇ କାନ କୁଣ୍ଡାନ୍ତି ।)

ମର୍କଟ : କ'ଣ ହେଲା ମିଷ୍ଟର ବିଲୁଆ ବିଶାଳ । ହଠାତ୍ ଏମିତି କାନ କୁଣ୍ଡେଇଲ ?

ବିଲୁଆ : ସାର୍ କଥା କ'ଣ କି ନୂଆ ଆଇଡ଼ିଆ କିଛି ମୁଣ୍ଡକୁ ଢୁକିଲେ କାନଟା କୁଣ୍ଡେଇ ହୁଏ । ହଠାତ୍ ଗୋଟେ ନୂଆ ଆଇଡ଼ିଆ ମୋ ମୁଣ୍ଡକୁ strike କଲା ଯେ...

ମର୍କଟ : କରୁ, କେବଳ ମୁଣ୍ଡକୁ ଷ୍ଟ୍ରାଇକ୍ କରିବାଟା ତ ଆଇଡ଼ିଆର ଧର୍ମ ।

ବିଲୁଆ : ସାର୍ ମଣିମାଙ୍କ ସମ୍ମୁଖରେ ଆଇଡ଼ିଆଟା express କରିବି କି ?

ମର୍କଟ : Yes, express କରିବା ତ ତମର ଧର୍ମ, କରିବନି କାହିଁକି, କର ।

ବିଲୁଆ : ସାର୍, ମୁଁ କ'ଣ ଭାବୁଥିଲି କି ଆମର ଏ ମୁକ୍ତାମାଳର ମୂଲ୍ୟକୁ ଯେମିତି କଳନା କରିହବନି ଡକ୍ଟର ହସ୍ତୀ ଶତପଥୀଙ୍କ ପ୍ରତିଭାକୁ ମଧ୍ୟ ସେମିତି କଳନା କରିବା ମୁସ୍କିଲ ।

ମର୍କଟ : ସେଇଥିପାଇଁ ତ ସେ ମୂଲ୍ୟବାନ ଗଳା ପାଇଁ ଏ ଅମୂଲ୍ୟ ରତ୍ନମାଳା ।

ବିଲୁଆ : But ହଜୁର....

ମର୍କଟ : What ?

ବିଲୁଆ : ହଠାତ୍ ଆମେ ଏମିତି... ମାନେ ଏହିଭଳି ଭାବରେ ଚାଲିଯାଇ ଏତେ ବଡ଼ ପୁରସ୍କାରଟାକୁ ସାଧାସିଧା ଭାବରେ ଦେଇଦେବା ଅର୍ଥାତ୍... ମାନେ... ସାମ୍ବାଦିକ ନଥିବେ, ଫଟୋଗ୍ରାଫର ନଥିବେ । ସଭା ନଥିବ କି ସମିତି ନଥିବ, ଭାଷଣ ନଥିବ, ତାଳିମାଡ଼ ନଥିବ, ବିଶେଷକରି ପଶୁ ସାଧାରଣ ନଥିବେ, ଏଭଳି ଏକ ଦରିଦ୍ର ପରିବେଶରେ ଏଭଳି ଏକ ମହତ୍ ପୁରସ୍କାର ଦେବାର କିମ୍ବା ନେବାର କୌଣସି ଗୁରୁତ୍ୱ ରହିବନି ।

ମର୍କଟ : ଅବଶ୍ୟ, ତୁମ୍ଭେ ଉଚିତ କଥା କହିଅଛ ।

ବିଲୁଆ : ଆମ୍ଭେ ତ ସୁଯୋଗ ଦେଖି କେବଳ ଉଚିତ କଥା ହିଁ କହିଥାଉ ହଜୁର ।

ମର୍କଟ : ଠିକ୍ ଅଛି ଏଥିପାଇଁ ଏକ ଶୁଭଦିନ ଧାର୍ଯ୍ୟ କରି ଏକ ମହାସଭାର ଆୟୋଜନ କରାଯାଉ । ବହୁ ବିଶିଷ୍ଟ ଅତି ବିଶିଷ୍ଟ ପଶୁମାନଙ୍କ ସହ ସାମ୍ବାଦିକ, ଫଟୋଗ୍ରାଫରମାନଙ୍କୁ ଆମନ୍ତ୍ରଣ କରାଯାଉ । ସେମାନଙ୍କ ସମ୍ମୁଖରେ ଆମ୍ଭେ ଡକ୍ଟର ହସ୍ତୀ ଶତପଥୀଙ୍କୁ ଏ ପୁରସ୍କାର ପ୍ରଦାନ କରିବୁ ।

ବିଲୁଆ : (ପ୍ରତି କଥାରେ ମୁଣ୍ଡ ହଲାଇ Yes କହୁଥା'ନ୍ତି) Yes Sir.

ମର୍କଟ : This morning walk adjourned for today.

ବିଲୁଆ : Thank you sir. (ଅନ୍ଧାର)

× × ×

(ସାଧାରଣ ମଣ୍ଡପକୁ ଆଲୋକ ଆସିବାରୁ ଦେଖାଯାଏ ଢାଉକ ସିଂ ମାଇକ୍ରୋଫୋନ୍ ଧରି ଦଣ୍ଡାୟମାନ ।)

ଢାଉକ : ଦର୍ଶକ ବନ୍ଧୁ, ଆମ୍ଭେ ଢାଉକ ସିଂ ଫ୍ରମ୍ ଫାଲ୍‌ତୁ ଟି.ଭି.ରୁ ଆପଣମାନଙ୍କୁ ଏକ ଚମତ୍କାର ଦୃଶ୍ୟ ଦେଖେଇବା ପାଇଁ ପଶୁପାଟଣାର ରାଜସଭାକୁ ନେଇ ଯାଉଛୁ, ଯେଉଁଠାରେ ନିଜେ ମହାମାନ୍ୟ ମହାରାଜ ମର୍କଟ ମୋହନ୍ ମହାକୁଡ଼ ବହୁଚର୍ଚ୍ଚିତ ମୁକ୍ତାମାଳ ପ୍ରସଙ୍ଗରେ ପାରିଷଦମାନଙ୍କ ଗହଣରେ ଆଲୋଚନା କରୁଛନ୍ତି ।

(ସାଧାରଣ ମଣ୍ଡପରେ ରାଜସଭା ଅନୁଷ୍ଠିତ ହେଉଥାଏ । ପାରିଷଦବର୍ଗଙ୍କ ମଧ୍ୟରେ ଗଧିଆ ମଲ୍ଲିକ, ଷଣ୍ଢ ମହାନ୍ତି, ଘୁଷୁରି ଘୋଷ ଆଦି ଉପବେଶନ କରି ସ୍ୱଭାବ ସୁଲଭ ଢଙ୍ଗରେ ଗପୁଥା'ନ୍ତି । ସିଂହାସନରେ ମହାରାଜା ବସି ବିଲୁଆ ବିଶାଳଙ୍କ ମନ୍ତ୍ରଣା ଗ୍ରହଣ କରୁଥା'ନ୍ତି ।)

ବିଲୁଆ : ମହାମାନ୍ୟ ମହାରାଜ ଏବଂ ଉପସ୍ଥିତ ପାରିଷଦବର୍ଗ । ଅଦ୍ୟ ହଠାତ୍ ଏକ ଜରୁରିକାଳୀନ ସମସ୍ୟାର ସମାଧାନ ପାଇଁ ମହାରାଜ ଏ ରାଜସଭା ଆହ୍ୱାନ କରିଛନ୍ତି । ଆପଣମାନଙ୍କୁ ନିବେଦନ ଆପଣମାନେ ନିରବରେ ମହାରାଜଙ୍କ ବକ୍ତବ୍ୟ ଶୁଣିବା ହୁଅନ୍ତୁ । ମହାରାଜାଙ୍କୁ ଆମ୍ଭର ଯୋଡ଼ହସ୍ତେ ନିବେଦନ କି ମହାରାଜ ତାଙ୍କର ଅଭିଳାଷ ବ୍ୟକ୍ତ କରନ୍ତୁ ।

ମର୍କଟ : ଧନ୍ୟବାଦ ମହାମନ୍ତ୍ରୀ ବିଲୁଆ ବିଶାଳ । ହେ ମୋର ପ୍ରିୟ ସଭାସଦ୍ ବର୍ଗ, ଅତିପ୍ରିୟ ଚାମଚାସମୂହ ଏବଂ ପରମ ଶତ୍ରୁ ମୂର୍ଖ opposition leader.

ଷଣ୍ଢ : କିଏ, କାହିଁ ?

ବିଲୁଆ : No Sir, cut sir cut. ସେମାନେ ଏଠି ନାହାନ୍ତି । କେବଳ ସଭାସଦ୍‌ବର୍ଗ ।

ମର୍କଟ : Ok. ଆପଣମାନେ ଜାଣନ୍ତି ଆମ୍ଭର Morning Walk କାଳରେ ଆମ୍ଭେ ଏକ ବହୁମୂଲ୍ୟ ମୁକ୍ତାମାଳ ପ୍ରାପ୍ତ ହୋଇଅଛୁ । ଯେଉଁ ମାଳଟିକୁ ଆମ୍ଭେ ଆମ୍ଭ ପଶୁପାଟଣାର ବିଶିଷ୍ଟ କବି, ସାହିତ୍ୟିକ, ବିଦ୍ୱାନ ପଶୁ ଡକ୍ଟର ହସ୍ତୀ ଶତପଥୀଙ୍କ ଗଳାରେ ଲମ୍ବେଇ ଦେବାକୁ ଚାହୁଁ ।

ଗଧିଆ : ହଁ ହଁ ଉଚିତ ପଦକ୍ଷେପ । ହସ୍ତୀ ଶତପଥୀ ଜଣେ ବିରାଟ ପ୍ରାଣୀ । ତାଙ୍କ ଗଳାରେ ମୁକ୍ତାମାଳ ଭଲ ମାନିବ ।

ଷଣ୍ଢ : କାହିଁକି, ଆମ୍ଭେ କ'ଣ ଛୋଟ ପ୍ରାଣୀ ? ନା ଆମ୍ଭର କରାମତି କିଛି କମ୍ । ଭୁଷାଭୁଷି କାର୍ଯ୍ୟରେ ଷଣ୍ଢ ମହାନ୍ତି କି ନଡ଼ରେ କିଏ ? ଆମ୍ଭ ସିଂଗକୁ ଦେଖିଲେ ପରା ନିଜେ ହସ୍ତୀ ଶତପଥୀ ଏକଦୁଇ କରି ପକାନ୍ତି ।

ଘୁଷୁରି : (ହସି) ହସାଇଲ ମହାନ୍ତିଏ, ଏ ହସ୍ତୀ ଶତପଥୀ ପୁଣି ଡରିବେ ଷଣ୍ଢ ମହାନ୍ତିଙ୍କୁ । ହଇଓ ମାହାନ୍ତିଏ ଶତପଥୀଙ୍କୁ ତ ଦେଖିଥିବ କି ନାହିଁ ତାଙ୍କ ଶୁଣ୍ଢକୁ ଦେଖିଛ ନା ?

ଷଣ୍ଢ : ହଃ ଦେଖିଛି, ଏମିତି କେତେ ଶୁଣ୍ଢ, କେବଳ ସେଇ ଗୋଟେ ଚିଜ ଅଛି ବୋଲି ବୁଢ଼ାର ଦିମାକ୍ ଏତେ !

ଗଧିଆ : ହଇଓ ଷଣ୍ଢେ, ସିଂହାସନରେ ମହାରାଜ ବିରାଜମାନ କରିଛନ୍ତି, ତାଙ୍କ ସମ୍ମୁଖରେ ଏମିତି ଗପସପ ହେଲେ ସୁନ୍ଦର ଦିଶୁଛି ନା ?

ଷଣ୍ଢ : ଏଇ ଚୁପ୍ । ତୁ ଟା ଥାର୍ଡ଼ ପର୍ସନ । ମୁଁ ଘୁଷୁରିକୁ କହୁଛି, ତୁ କାହିଁକି ଉପରେ ପଡ଼ି ରଡ଼ି ଛାଡୁଛୁ ?

ବିଲୁଆ : ଓ ଶାନ୍ତି ଶାନ୍ତି, ହଇଓ କ୍ଷଣ୍ଣ, ତମେ ଯେଉଁଠି ସେଠି ପଶିଯାଅ ବୋଲି ତମର ଗୋଟେ ଦୁର୍ନାମ ଅଛି । ତା' ବୋଲି ରାଜସଭାରେ ରାଜାଙ୍କ ଆଗରେ ତମେ ଏମିତି କରିବ ନା ।

ମର୍କଟ : ହେଲା ହେଲା, ରାଜସଭାରେ ପାରିଷଦବର୍ଗ ଏମିତି କଳି କରିବା, ମୁଥ ମରାମରି, ଗଡ଼ାପଡ଼ା ହେଉଥିବାର ଆମ୍ଭେ ଦେଖିଅଛୁ । ତା' ଭିତରେ ବି ରାଜକାର୍ଯ୍ୟ ଚାଲେ ।

ଘୁଷୁରି : ମୁଁ ମହାମାନ୍ୟ ମହାରାଜଙ୍କୁ ଆମ ପାରିଷଦବର୍ଗଙ୍କ ପକ୍ଷରୁ କ୍ଷମାମାଗି କାର୍ଯ୍ୟ କରିବାକୁ ଅନୁରୋଧ କରୁଅଛି ।

ମର୍କଟ : ଧନ୍ୟବାଦ । ଆମ୍ଭର ନିବେଦନ ଏହିକି, ଆଗାମୀ ପଶୁ ସାଧାରଣତନ୍ତ୍ର ଦିବସରେ ଗଧ ସ୍ମୃତିଭବନ ଠାରେ ଏକ ସ୍ୱତନ୍ତ୍ର ଉତ୍ସବ ଆୟୋଜନ କରାଯାଇ ଏ ମୁକ୍ତାମାଳ ପ୍ରଦାନ କରାଯିବ । (ସମସ୍ତେ ତାଳି ମାରିଲେ)

ବିଲୁଆ : ସାର୍, ସାର୍...

ମର୍କଟ : ପୁଣି what ହେଲା ମିଷ୍ଟର ବିଶାଳ ?

ବିଲୁଆ : ଗୋଟେ ସଜେସନ୍ ସାର୍ ।

ମର୍କଟ : ଓହୋ କେତେ ଆଉ ସଜେସନ୍ ଦେବ । ତମ ସଜେସନ୍ ନେଇ ନେଇ ମୋ ଅଣ୍ଟାପିଠି ଦରଜ କରିଗଲାଣି ।

ଗଧିଆ : ସାର୍, ସଜେସନ୍‌ଗୁଡ଼ା ପିଠିରେ କାହିଁକି ପକଉଛନ୍ତି ମୁଣ୍ଡକୁ ଉଠେଇ ନିଅନ୍ତୁ । ଜମା ଜଣା ପଡ଼ିବନି ।

ବିଲୁଆ : ହେଲେ ସାର୍, ମୋର ତ କାର୍ଯ୍ୟ ହେଲା ସଜେସନ୍ ଦେବା ।

ମର୍କଟ : ହଉ ଦିଅ, ଗୋଟେ କାହିଁକି ଦବ, ଯଦି ପାରୁଛ ଶହେଟା ଖଣ୍ଡେ ଲଦ ।

ବିଲୁଆ : ସାର୍ କଥା କ'ଣ କି ଡକ୍ଟର ହସ୍ତୀ ଶତପଥୀ ଜଣେ କବି ସାହିତ୍ୟିକ ପଣ୍ଡିତ ଏକଥା ଆମେ ସିନା ଜାଣିଛୁ ହେଲେ ଏ ପଶୁ ସାଧାରଣ ଜାଣି ନାହାନ୍ତି ।

ମର୍କଟ : ଜଣେଇ ଦବ, ଆରେ କିଏ ଅଛି ।

ବିଲୁଆ : ସାର୍ ସାର୍ ରୁହନ୍ତୁ ସାର୍ । ମୁଁ କ'ଣ କହୁଥିଲି କି ବୀରମାନଙ୍କୁ ଯେମିତି ଯୁଦ୍ଧକ୍ଷେତ୍ରରେ ଚିହ୍ନା ଯାଏ, ଖେଳାଳୀମାନଙ୍କୁ ଯେମିତି ଖେଳପଡ଼ିଆରେ ଚିହ୍ନାଯାଏ, କବି ସାହିତ୍ୟିକ ପଣ୍ଡିତମାନଙ୍କୁ ସେମିତି ପ୍ରତିଯୋଗିତାରେ ଚିହ୍ନିବା ଉଚିତ ।

ମର୍କଟ : ପ୍ରତିଯୋଗିତା(ହସି) ମୋତେ ହସାଇଲ ମିଷ୍ଟ ବିଲୁଆ ବିଶାଳ । ପ୍ରତିଯୋଗିତା ପୁଣି ଡକ୍ଟର ହସ୍ତୀ ଶତପଥୀଙ୍କ ସହିତ ? କିଏ ସାହସ କରିବ । ଆମ ରାଜ୍ୟରେ ସେମିତି ଜନ୍ତୁ ଅଛନ୍ତି ନା ?

ଘୁଷୁରି : ଖାଲି ଆମ ରାଜ୍ୟ କାହିଁକି, ଏ ଆଖପାଖ ରାଜ୍ୟରେ ବି ହସ୍ତୀ ଶତପଥୀଙ୍କୁ ଟକ୍କର ଦେଲା ଭଳି ପଣ୍ଡିତ ନାହାନ୍ତି ।

ଷଣ୍ଢ : ଘୁଷୁରି ଘୋଷ ଠିକ୍ କହିଛନ୍ତି ମଣିମା ।

ଗଧିଆ : ତା' ହେଲେ ଆଉ ଡେରି କାହିଁକି ?

ବିଲୁଆ : ଢାଉକ ସିଂକୁ ଚିହ୍ନିଛ ନା ? ଫାଲତୁ ଟି.ଭି.କୁ ଦେଖିଛ ନା ? ଦବ ଦି'ପଦ ଶୋଧି ଯେ ବାପକୁ ଦାଦୀ ବୋଲି କହି କବାଟ କିଳି ପଶିବ ।

ମର୍କଟ : ଅବଶ୍ୟ, ମୋତେ ସେ ମିଡ଼ିଆବାଲାଙ୍କୁ ବେଶି ଭ... । ହଉ କ'ଣ କରାଯିବ ମିଷ୍ଟର ବିଶାଳ ?

ବିଲୁଆ : ଆମ୍ଭେ ତ ଜାଣିଅଛୁ ଡକ୍ଟର ହସ୍ତୀ ଜଣେ ବିଜ୍ଞ ପଣ୍ଡିତ । ତାଙ୍କ ସହିତ ବିଦ୍ୟାବୁଦ୍ଧିଜ୍ଞାନରେ କେହି ପାରିବେନି । ପ୍ରତିଯୋଗିତା ହେଲେ ସେ ନିଶ୍ଚୟ ଜିତିବେ । ଆମେ କାହିଁକି ତାଙ୍କ ନାମଟା ଏମିତି declare କରିଦେବା ! ପୁରସ୍କାର ଚୟନ କମିଟି ଦ୍ୱାରା ତାଙ୍କ ନାମଟା declare ହବ ।

ଅନ୍ୟମାନେ : ପୁରସ୍କାର ଚୟନ କମିଟି ?

ବିଲୁଆ : ହଁ, ଆମେ ଏକ ପ୍ରତିଯୋଗିତା ମାଧ୍ୟମରେ ମୁକ୍ତାମାଳ ପୁରସ୍କାର ଦିଆଯିବ ବୋଲି ଘୋଷଣା କରିଦେବା । ଯିଏ ପାଇବାକୁ ଚାହିଁବ apply କରିବ । ତା'ପରେ ଆମେ ଏକ ବିଚକ୍ଷଣ ଚୟନ କମିଟି ଦ୍ୱାରା ଉପଯୁକ୍ତ ପ୍ରାର୍ଥୀ ମନୋନୟନ କରିବା ।

ମର୍କଟ : ମାନେ ଡକ୍ଟର ଶତପଥୀ...

ଗଧିଆ : ହଁ ହଁ ତାଙ୍କ ସାଙ୍ଗରେ ଆଉ ପାରିବ କିଏ ?

ବିଲୁଆ : ସିଏ ତ ଜିତିବେ ଏବଂ ନିରପେକ୍ଷ ଭାବରେ ପୁରସ୍କାର ପ୍ରଦାନ କରାଗଲା ବୋଲି ଡାଉଜ ସିଂ କହିବେ ।

ମର୍କଟ : Yes, ଉଚିତ କଥା ।

ବିଲୁଆ : ଆମ୍ଭେ ତ ସଦାସର୍ବଦା କେବଳ ଉଚିତ କଥା ହିଁ କହିଥାଉ । ଏହାଦ୍ୱାରା ଆମ୍ଭ ପୁରସ୍କାର ଗୁରୁତ୍ୱ ବଢ଼ିବା ସଂଗେ ସଂଗେ ଡକ୍ଟର ଶତପଥୀଙ୍କ ମହତ୍ୱ ବି ବଢ଼ିଯିବ ।

ମର୍କଟ : ବାସ୍ତବିକ ମିଷ୍ଟର ବିଶାଳ you are very ଚାଲାକ ।

ବିଲୁଆ : Very much ଚାଲାକ ।

ଷଣ୍ଢ : ଅତି ଚତୁର ମଣିଷ ପରା ଏଇ କଥା କହେ ।

ଗଧିଆ (ହସି) ବିଲୁଆ ବଡ଼ ଚତୁର ପଇଡ଼ ବଡ଼ ମଧୁର ।

ଘୁଷୁରି : ମଣିଷ ଭଳିଆ ପ୍ରଶଂସା କଂଜୁସ୍ ଠାରୁ ଏଭଳି କମେଣ୍ଟ ପାଇବା କ'ଣ କମ୍ କଥା ?

ବିଲୁଆ : ଦେବତାମାନେ ତ ପାଆନ୍ତିନି ଆମେ ତ ପଶୁ ।

ମର୍କଟ : Yes, ତା'ହେଲେ ମହାମନ୍ତ୍ରୀ ବିଲୁଆ ବିଶାଳଙ୍କୁ ଏ ମୁକ୍ତାମାଳର ଦାୟିତ୍ୱ ଦିଆଗଲା ସେ ଉପଯୁକ୍ତ ଧାରାରେ ପ୍ରାର୍ଥୀ ଚୟନ କରାଇ ପୁରସ୍କାର ବିତରଣର ବନ୍ଦୋବସ୍ତ କରିବେ ।

ଅନ୍ୟମାନେ : ସାଧୁ ସାଧୁ ସାଧୁ ।

ବିଲୁଆ : ଧନ୍ୟବାଦ ।

ମର୍କଟ : ମୁକ୍ତାମାଳ ପ୍ରସଙ୍ଗକୁ ଏଇଠି ଥୋଇ ଅନ୍ୟାନ୍ୟ କାର୍ଯ୍ୟ କରାଯାଉ ।

(ବାମ ଅଞ୍ଚଳକୁ ଆଲୋକ ଆସେ । ଢାଉକ ସିଂ ମାଇକ୍ରୋଫୋନ୍ ଧରି ଛିଡ଼ା ହେଇଥାଆନ୍ତି ।) ଢାଉକ ଗୋଟେ T.V. Pauseରେ ଛିଡ଼ା ହୋଇ news ପଢ଼ନ୍ତି ।)

ଢାଉକ ସିଂ : ହଁ, ଦର୍ଶକବନ୍ଧୁ ଆମ୍ଭେ ଢାଉକ ସିଂ ଫ୍ରମ୍ ଫାଲ୍‌ତୁ ଟି.ଭି.ରୁ ଆପଣମାନଙ୍କୁ ଏକ ବିଶେଷ ସଂବାଦ ଜଣେଇ ଦେବାକୁ ଚାହୁଁଛୁ । ଏବେ ଏବେ ରାଜସଭାରୁ ହସ୍ତଗତ ହୋଇଥିବା ଏକ ଗୁରୁତ୍ୱପୂର୍ଣ୍ଣ ସମ୍ବାଦରୁ ଜଣାଯାଇଛି ଯେ ଆଗାମୀ ପଶୁ ସାଧାରଣତନ୍ତ୍ର ଦିବସରେ ପଶୁପାଟଣାରେ ଏକ ବିଶେଷ ପଶୁ ପୁରସ୍କାର ପ୍ରଦାନ କରାଯିବ ।

ତେଣୁ ପଶୁପାଟଣା ଆଗ୍ରହୀ ବିଶିଷ୍ଟ ପଶୁମାନଙ୍କ ନିଜର ଫଟୋ ଓ biodata ସହ ନିର୍ଦ୍ଧାରିତ ଫର୍ମରେ ଆବେଦନ ଆହ୍ୱାନ କରାଯାଇଛି । ଆବେଦନ ଶେଷ ତାରିଖ ଆଗାମୀ ଫେବୃଆରୀ ମାସ ୩୦ତାରିଖକୁ ଧାର୍ଯ୍ୟ କରାଯାଇଛି । (ହସ୍ତୀ ଆସନ୍ତି)

ହସ୍ତୀ : ହଇଓ ଢାଉକ ତମ ସରକାରର ତାରିଖ ଜ୍ଞାନ ନାହିଁ ବୋଲି କ'ଣ ତମର ତାରିଖ ଜ୍ଞାନ ନାହିଁ ?

ଢାଉକ : କ'ଣ ହେଲାକି ସାର୍ ।

ହସ୍ତୀ : କିଏ ଫେବୃଆରୀ ମାସଟା କେତେ ତାରିଖ କି ?

ଢାଉକ : ଫେବୃଆରୀ... ହଁ ଅଠେଇଶ କେବେକେବେ ଅଣତିରିଶ ।

ହସ୍ତୀ : ଆଉ ତମେ କହୁଛ ତିରିଶ । ଭୁଲ୍ କାହିଁକି କହୁଛ କରେକ୍ସନ୍ କର ।

ଢାଉକ : କରେକସନ୍ ? ହେବନି ସାର୍ । ଏଟା ସରକାରୀ ବିଜ୍ଞାପନ । ଏଥିରେ ଯାହା ଲେଖା ଅଛି ଅବିକଳ ତାକୁଇ ଛାପିବାକୁ ବାଧ୍ୟ । ସାର୍ ଆପଣ ତ ପୁରସ୍କାର ପାଇବେ ନ ହେଲେ ଆଗରୁ apply କରିଦେବେ । Complain କରନ୍ତୁନି ସାର୍ ନହେଲେ...

ହସ୍ତୀ : ପୁରସ୍କାର ଦେବେନି ? ନ ଦିଅନ୍ତୁ, ଭୁଲ୍ କଲେ ତ ଆମେ ଆଉ ଆଖିବୁଜି ଦେଇ ବସିପାରିବୁନି, କହିବୁ ନା (ଯାଆନ୍ତି) ।

ଢାଉକ : ଏଇ ପରା... ଏ ସାହିତ୍ୟିକ ବୁଦ୍ଧିଜୀବୀମାନଙ୍କର ଗୋଟେ ବଦ୍‌ଗୁଣ । ଏମିତିକି ବନାନ୍ ଟିକିଏ ଭୁଲ ହୋଇଗଲେ ସମଗ୍ର ମହାଭାରତଟାକୁ ଅଶୁଦ୍ଧ କରିଦେବେ । (ଅନ୍ଧାର)

× × ×

ପରବର୍ତ୍ତୀ ଆଲୋକ ଆସେ ସାଧାରଣ ମଣ୍ଡପକୁ ଯେଉଁ ମଣ୍ଡପ ଏକ ଉତ୍ସବ ମଞ୍ଚରେ ପରିଣତ । ସମଗ୍ର ମଞ୍ଚଟି ନିମନ୍ତ୍ରିତ ଅତିଥି ତଥା ସାମ୍ବାଦିକମାନଙ୍କ ଦ୍ୱାରା ଭରପୂର । ବିଲୁଆ ମନ୍ତ୍ରୀ ଭାବରେ ସ୍ୱାଗତ ଭାଷଣ ଦେଉଥା'ନ୍ତି । ରାଜାଙ୍କ ଆସିବା ବିଳମ୍ବ ହେଉଥାଏ । ସମସ୍ତେ ଉଦ୍‌ବିଗ୍ନ ।)

ବିଲୁଆ : ମହାଭାଗ, ଆଜିର ଏ ପବିତ୍ର ପଶୁତନ୍ତ୍ର ଦିବସରେ ଆପଣମାନଙ୍କୁ ମହାମନ୍ତ୍ରୀ ବିଲୁଆ ବିଶାଳର ଅଭିନନ୍ଦନ । ଆପଣମାନେ ଜାଣନ୍ତି ଆଜି ଏଠାରେ ଏମିତି ଏକ ଆଡ଼ମ୍ବରପୂର୍ଣ୍ଣ ଉତ୍ସବର ଆୟୋଜନ କରାଯିବାର ଉଦ୍ଦେଶ୍ୟ । ଆଜି ଏହି ମଞ୍ଚରେ ରାଜ୍ୟର ଏକ ସମ୍ମାନଜନକ ପୁରସ୍କାର ଜଣେ ସବୁଠୁ ଜ୍ଞାନୀ, ଗୁଣୀ ଓ ବିଦ୍ୱାନ ସାହିତ୍ୟିକ ପଶୁଙ୍କୁ ପ୍ରଦାନ କରାଯିବ । ଚୟନ କମିଟିର ସୁପାରିଶ ଆମର ହସ୍ତଗତ ହୋଇ ସାରିଛି । କେବଳ ମହାରାଜଙ୍କୁ ଅପେକ୍ଷା କରାଯାଇଛି । ପଶୁପାଟଣାର ମହାମାନ୍ୟ ମହାରାଜ ମର୍କଟ ମୋହନ ମାହାକୁଡ଼ ଅନ୍ୟଏକ ସଭାରେ ବ୍ୟସ୍ତ ଅଛନ୍ତି । ଯା ପରେ ଆଉ ଏକ ସଭା ଅନୁଷ୍ଠିତ ହେବ, ଏହାରି ମଧ୍ୟରେ ଆମ ଅନୁରୋଧକୁ ଏଡ଼ି ନ ପାରି ମହାରାଜ ଏଠାକୁ ଆସୁଛନ୍ତି । ସେ କେବଳ ପୁରସ୍କାର ପ୍ରଦାନ କରି ଚାଲିଯିବେ। ତେଣୁ ଆପଣମାନେ ଭାଷଣ ପାଇଁ ଭୟ କରନ୍ତୁନି । ଆସିଗଲେ, ଏଇ ମହାରାଜ ଆସିଗଲେ । ଆପଣମାନଙ୍କୁ ଅନୁରୋଧ, ଆପଣମାନେ ସ୍ୱସ୍ଥାନରେ ଦଣ୍ଡାୟମାନ ହୋଇ ପଶୁଗଣମନଅଧି...ଗାଇବେ ।

ମର୍କଟ : (ପହଞ୍ଚି) ଧନ୍ୟବାଦ ମୁଁ ଟିକିଏ ବ୍ୟସ୍ତ ଅଛି ।(ଗାଇଲେ) ଧନ୍ୟବାଦ ବନ୍ଧୁଗଣ ! ଆମ୍ଭେ ଅଦ୍ୟ ଭାରି ବ୍ୟସ୍ତ । ସମଗ୍ର ପଶୁପାଟଣାରେ ଆଜି ଏ ଉତ୍ସବ ପାଳିତ ହେଉଛି, ସମସ୍ତେ ଆମ୍ଭଙ୍କୁ ମୁଖ୍ୟ ଅତିଥି ଭାବରେ ଚାହୁଁଛନ୍ତି । କ'ଣ କରିବି ସେଥିପାଇଁ ଆମ୍ଭରଏଠାକୁ

ଆସିବାରେ ଅହେତୁକ ବିଳମ୍ବ ଘଟିଥିବାରୁ ଆମ୍ଭେ ଦୁଃଖିତ । ଆମ୍ଭଙ୍କୁ କ୍ଷମା କରିବେ । ହଁ, ମିଷ୍ଟର ବିଶାଳ ଡେରି କାହିଁକି । ମାଳା ଆଣ ।

ବିଲୁଆ : Yes ସାର୍ । ଆପଣ ସ୍ୱହସ୍ତରେ ଏ ମାଳା ପ୍ରଦାନ କରିବେ ।

ମର୍କଟ : (ନେଇ). ଦିଅ. କାହାନ୍ତି ? ଡକ୍ଟର ହସ୍ତ ଶତପଥୀଙ୍କୁ ଡାକ ।

ବିଲୁଆ : ରୁହନ୍ତୁ ସାର୍ । ପୁରସ୍କାର ପ୍ରଦାନ ଫର୍ମାଲିଟି ଅଛି । ତାକୁ follow ନ କଲେ ସାମ୍ବାଦିକ୍‌ମାନେ ଅଛନ୍ତ ଚାଞ୍ଚି ଦେବେ ।

ମର୍କଟ : ପୁରସ୍କାର ପ୍ରଦାନର ଫର୍ମାଲିଟି ?

ବିଲୁଆ : Yes ସାର୍ । ମୁଁ ପ୍ରଥମେ ଆପଣଙ୍କୁ ପୁରସ୍କାର ପ୍ରଦାନ ପାଇଁ ଅନୁରୋଧ କରିବି । ତା' ପୂର୍ବରୁ ଘୁଷୁରୀ ଘୋଷଙ୍କୁ ଚୟନ କମିଟିର ସୁପାରିଶ ପଢ଼ିବାକୁ ଅନୁରୋଧ କରିବି । ସେ ନାମ ଘୋଷଣା କଲାମାତ୍ରେ ମନୋନୀତ ପ୍ରତିଭା ମଞ୍ଚକୁ ଆସିବେ, ଆପଣ ତାଙ୍କୁ ପୁରସ୍କୃତ କରିବେ ।

ମର୍କଟ : ଯାହା କରୁଛ ଶୀଘ୍ର କର ।

ବିଲୁଆ : ବନ୍ଧୁଗଣ, ଆପଣମାନେ ଜାଣନ୍ତି ଏହି ଗୌରବମୟ ପୁରସ୍କାର ପ୍ରଦାନ ପାଇଁ ଆମେ ଏକ ସୁଦକ୍ଷ ତଥା ନିରପେକ୍ଷ ଚୟନ କମିଟି ଗଠନ କରିଥିଲୁ, ଯେଉଁ କମିଟିର ଅଧ୍ୟକ୍ଷ ଥିଲେ ଶ୍ରୀଯୁକ୍ତ ଘୁଷୁରି ଘୋଷ । ମୁଁ ଶ୍ରୀଯୁକ୍ତ ଘୋଷଙ୍କୁ ଅନୁରୋଧ କରୁଛି ସେ ଏଠାରେ ଆସି ଏହି ପୁରସ୍କାର ବିଜେତାଙ୍କ ନାମ ଘୋଷଣା କରନ୍ତୁ । ଏହି ପରିପ୍ରେକ୍ଷୀରେ ମୁଁ ମୋର ମିଡ଼ିଆବନ୍ଧୁମାନଙ୍କୁ ଅନୁରୋଧ କରୁଛି, ସେମାନେ ଶୃଙ୍ଖଳିତ ଭାବରେ ଆସି ଫଟୋ ଗ୍ରହଣ କରନ୍ତୁ ।

ମର୍କଟ : ଆରେ ଭାଇ ଘୁଷୁରି, ଶୀଘ୍ର ।

ଘୁଷୁରି : Yes ସାର୍ । ଆଜି ଆମର ଏ ମୁକ୍ତାମାଳ ପୁରସ୍କାର ପ୍ରଦାନ ଉତ୍ସବର ଅଧ୍ୟକ୍ଷ, ମହାମନ୍ତ୍ରୀ ବିଲୁଆ ବିଶ୍ୱାଳ ମହୋଦୟ, ମୁଖ୍ୟ ଅତିଥି ମହାମାନ୍ୟ ମହାରାଜ ମର୍କଟମୋହନ ମହାକୁଡ଼ ମହୋଦୟ ଓ ଅନ୍ୟାନ୍ୟ ଅତିଥିଗଣ । ଆମେ ଏକ ସାତଜଣିଆ କମିଟି ବହୁ ବିଚାରବିମର୍ଶ ପରେ ଏହି ପୁରସ୍କାର ପାଇଁ ଯାହାଙ୍କ ନାମ ବହୁମତରେ ମନୋନୀତ କରିଛୁ ସେ ହେଲେ...

ବିଲୁଆ : ଶ୍ରୀଯୁକ୍ତ ଘୋଷ ପୁରସ୍କୃତ ପଶୁଙ୍କ ନାମ ଘୋଷଣା କଲାମାତ୍ରେ ଆପଣମାନେ ତାଙ୍କୁ କରତାଳି ଦେଇ ସ୍ୱାଗତ କରିବେ ଏବଂ ସେ ମହାଶୟ ଏଠାକୁ ଆସି ମହାରାଜଙ୍କ ଠାରୁ ପୁରସ୍କାର ଗ୍ରହଣ କରିବେ ।

ମର୍କଟ : ଆରେ ଶୀଘ୍ର ।

ବିଲୁଆ : ହଁ, ଘୁଷୁରି ବାବୁ...

ଘୁଷୁରି : କ'ଣ ମୂଳରୁ ?

ମର୍କଟ : ନା ନା କେବଳ ନାଁଟା କୁହ ।

ଘୁଷୁରି : ସେ ହେଉଛନ୍ତି ଆମ ରାଜ୍ୟର ସର୍ବଶ୍ରେଷ୍ଠ ଜ୍ଞାନୀଗୁଣୀ ତଥା ବିଦ୍ୱାନ ପଶୁ ଶ୍ରୀଯୁକ୍ତ କୁକୁରଚନ୍ଦ୍ର ଦାସ ।

ବିଲୁଆ : ମୁଁ ତାଙ୍କୁ ଅନୁରୋଧ କରୁଛି ମଞ୍ଚକୁ ଆସନ୍ତୁ ।

ମିଳିତ ସ୍ୱର : କ'ଣ କହିଲ ? କୁକୁର ଚନ୍ଦ୍ର ଦାସ, ନା ହେଇପାରିବନି ।

କୁକୁର : କ'ଣ କହିଲେ ହୋଇପାରିବନି ? ରାଜ୍ୟରେ କ'ଣ ହାଇକୋର୍ଟ ଉଠିଗଲାଣି ? ମୁଁ କିଛି ଶୁଣିବିନି । ଚୟନ କମିଟି ମୋତେ ଚୟନ କରିଛି । ଏଠି ଘୋଷଣା କରାଯାଇଛି ମାନେ ମୋତେ ପୁରସ୍କାର ଦେବାକୁ ବାଧ୍ୟ, ନ ହେଲେ ସିଧା ହାଇକୋର୍ଟ ଦେଖେଇ ଦେବି ।

ମର୍କଟ : ଏୟ ଚୁପ୍‌କର, ମୁଁ ରଜା ।

କୁକୁର : ହାଟ୍ ଏଠି ଗଣତନ୍ତ୍ର ଶାସନ ଚାଲିଛି, ରାଜା ନାମକୁମାତ୍ର ।

ମର୍କଟ : ଏ କ'ଣ ହେଉଛି ମିଷ୍ଟର ବିଶାଳ ।

ବିଲୁଆ : ଗଣତାନ୍ତ୍ରିକ ରାଷ୍ଟ୍ରର ମହାମାନ୍ୟ ମହାରାଜ କେବଳ ରବରଷ୍ଟାମ୍ପ୍ ।

ମର୍କଟ : ରବର ଷ୍ଟାମ୍ପ ? ଆଉ...

କୁକୁର : ମନ୍ତ୍ରୀ ହେଂଉଛନ୍ତି ସର୍ବେସର୍ବା ।

ବିଲୁଆ : ସଂବିଧାନରେ ଲେଖାଅଛି ହଜୁର ।

ମର୍କଟ : କିନ୍ତୁ ଡକ୍ଟର ହସ୍ତୀ ଶତପଥୀ ।

ଘୁଷୁରି : ଏ ପ୍ରସଙ୍ଗରେ ଆମର ସିଦ୍ଧାନ୍ତ ଫାଇନାଲ ।

ବିଲୁଆ : ଆପଣ ଚୁପ୍ ରହିଲେ ଉତ୍ତମ ।

କୁକୁର : ହୁଁ (ବେକ ଦେଖାନ୍ତି ସାଧାରଣ ମଣ୍ଡପ ଅନ୍ଧାର ହୋଇ ବାମ ଅଞ୍ଚଳକୁ ଆଲୋକ ଆସେ ।)

(ଡାଉକ ସିଂ ମାଇକ୍ରୋଫୋନ୍ ଧରି ଛିଡ଼ା ହୋଇଥା'ନ୍ତି, ତାଙ୍କ ଉଭୟ ପାର୍ଶ୍ୱରେ କୁକୁର ଓ ହସ୍ତୀ)

ଢାଉକ : ତ ଇଏ ଥିଲା ପଶୁପାଟଣା, ଯେଉଁଠାରେ ଆପଣମାନେ ପଶୁମାନଙ୍କର ମଣିଷ କର୍ମ ଦେଖିବାକୁ ପାଇଲେ । ଜଣେ ପୁରସ୍କାର ପାଇବାର ଥାଏ, ଆଉଜଣେ ପାଇଯାଏ । ଆସନ୍ତୁ ତାଙ୍କୁ ପଚାରି ବୁଝିବା ଏହାର ରହସ୍ୟ । ଆଚ୍ଛା ମିଷ୍ଟର କୁକୁର ଦାସ ଆପଣଙ୍କୁ ଆମ ଫାଲ୍‌ତୁ ଟି.ଭି. ପକ୍ଷରୁ ଅଭିନନ୍ଦନ । ଆପଣ ଆଜି ଏ ପଶୁପାଟଣାର ସର୍ବଶ୍ରେଷ୍ଠ ପୁରସ୍କାରପ୍ରାପ୍ତ ହେଲେ । ଏଥିରେ ଆପଣଙ୍କ ପ୍ରତିକ୍ରିୟା କ'ଣ ?

କୁକୁର : ଅବଶ୍ୟ ଏହି ପୁରସ୍କାର ମୋତେ ବହୁ ପୂର୍ବରୁ ମିଳିବାର ଥିଲା । ବିଳମ୍ବରେ ମିଳିଥିବାରୁ ସେତେ ସୁଖ ମିଳି ପାରୁନି ତଥାପି ମୁଁ ଖୁସି ।

ଢାଉକ : ଆପଣ କେଉଁ କଳାକୌଶଳ ପ୍ରୟୋଗ କରି ଉକ୍ତର ହସ୍ତୀ ଶତପଥୀଙ୍କ ଭଳି ପ୍ରଚଣ୍ଡ ପ୍ରତିଭାଧରଙ୍କୁ ପଛରେ ପକାଇ ଏ ପୁରସ୍କାର ଆଣିବାକୁ ସମର୍ଥ ହେଲେ ?

କୁକୁର : ତାହା ମୋର ଏକାନ୍ତ ବ୍ୟକ୍ତିଗତ ବ୍ୟାପାର ।

ଢାଉକ : ହେଲା, ଆମେ ତ ମିଡ଼ିଆମେନ୍ । ଆମେ ଜାଣିଲେ କ୍ଷତି କ'ଣ ?

କୁକୁର : ତମେ ତ ଅସଲ, ତମେ ଜାଣ ତମ ଏ କେମେରା ଜାଣିଲାମାନେ ସତ୍ୟାନାଶ ହୋଇଗଲା ।

ଢାଉକ : ହଉ ଆମେ ଆମ sound systemକୁ Repoterକୁ off କରିଦେଉଛୁ । ଏ ଶାଗୁଣା ଭାଇ sound ନିଅନି । କୁହନ୍ତୁ ।

କୁକୁର : ହେଲା, ପୁରସ୍କାର ତ ମିଳି ସାରିଛି । ଏବେ କହିଲେ କ୍ଷତି ନାହିଁ । କଥା କ'ଣ କି, ତମେ ତ ଜାଣ ମୁଁ ସିନା ପଶୁ, ହେଲେ ମଣିଷ

ଘରେ ରହେ । ଆଉ ଏ ପୁରସ୍କାର ଧନ୍ଦା ସବୁ ମଣିଷ ଘରେ ଢେର ଚାଲେ । ମୁଁ ତାଠୁ ଢେର ଢେର କଳା ଶିଖିଛି । ତା'ଛଡ଼ା ମୋର ଗୋଟେ ବିଶେଷ ଗୁଣ ହେଲା ମୁଁ ପାଦ ଚାଟିପାରେ । ଆଉ ଅଇଁଠା ବି ଖାଇ ଶିଖିଛି ଏବଂ ଆବଶ୍ୟକ ହେଲେ ଭୋ ଭୋ କରି ଭୁକି ବି ପାରେ ।

ଡାଉକ : ଏତିକି କଳା ହେଲେ ତ ହେଇଗଲା । Thank you sir. ଆଚ୍ଛା ଡକ୍ଟର ଶତପଥୀ, ଏ ପୁରସ୍କାରଟା ଜାଲେ ଆପଣଙ୍କର ପାଇବାର ଥିଲା, କିନ୍ତୁ ପାଇଲେ ନାହିଁ । ଆପଣଙ୍କର କିଛି ପ୍ରତିକ୍ରିୟା ?

ହସ୍ତୀ : ମୁଁ ବି ସେଇ ମଣିଷ ପାଖରେ ଥାଏ । ଅବଶ୍ୟ ଏ ନୀଚମନା ମଣିଷ ନୁହେଁ, ମୁଁ ରହେ ରାଜା ପାଖରେ, ଯେଉଁଠାରେ ପାଦ ଚାଟିବାକୁ ପଡ଼େ ନାହିଁ । ଅଇଁଠା ଖାଇବାକୁ ପଡ଼େ ନାହିଁ । ଆଉ ମଣିଷ କ'ଣ କହେ ଜାଣ, ହାତୀ ମଲେ ଲକ୍ଷେ ତ ବଞ୍ଚିଲେ ଲକ୍ଷେ । ତେଣୁ ମୋର ବଞ୍ଚି ରହିଲେ ଯେତିକି ଆନନ୍ଦ ମରିଗଲେ ବି ସେତିକି ।

ଡାଉକ : ବାଃ ଧନ୍ୟବାଦ ଡକ୍ଟର ଶତପଥୀ । ଆପଣ ପରାଜୟକୁ ଯେତେ ସହଜରେ ଉଡ଼େଇ ଦେଲେ ବାସ୍ତବରେ ଆପଣ ଜ୍ଞାନୀ । ଧନ୍ୟବାଦ । ଦର୍ଶକବନ୍ଧୁ ଇଏ ଥିଲା ପଶୁତନ୍ତ୍ର ଶାସନର ପ୍ରକୃତ ସ୍ୱରୂପ । କେମେରାମେନ୍ ଶାଗୁଣା ସାହୁଙ୍କ ସହ ମୁଁ ଡାଉକ ସିଂ ଫ୍ରମ୍ ଫାଲ୍‌ତୁ ଟି.ଭି. ନମସ୍କାର ।

– ଅନ୍ଧାର –

## ଏଥିରେ ଥିବା ଚରିତ୍ରମାନେ

- ଯାଦବ
- ପୂର୍ଣ୍ଣଚନ୍ଦ୍ର
- ରମ୍ଭୁ
- ଲମ୍ବୋଦର
- ଟେଲର
- ଡାକ୍ତର
- ଗନ୍ଧର୍ବ
- ପଣ୍ଡିତେ
- ସନିଆ
- ଟେଙ୍ଗବତୀ

# ଅର୍ଦ୍ଧଚନ୍ଦ୍ର ପ୍ରହସନ

(ଯାଦବ ପଟ୍ଟନାଏକଙ୍କ ଘର । କୌଣସି ଏକ ଉତ୍ସବରେ ଅତିଥିଙ୍କ ସ୍ୱାଗତ ପାଇଁ କକ୍ଷଟି ବେଶ୍ ସଜ୍ଜିତ । ସାମ୍ନାରେ ଏକ ସାକ୍ଷାତକାର୍ ପ୍ରକୋଷ୍ଠ, ଯାଦବ ପଟ୍ଟନାୟକଙ୍କର ଏକମାତ୍ର କନ୍ୟା ମୀତାଲିର ସ୍ୱୟମ୍ବର । ଆଜି ବାହାଘର ଅଥଚ ଆଜି ମଧ୍ୟ ବର ବଛା ସାକ୍ଷାତକାର, ମିତାଲିର ରଙ୍ଗିନ ଫଟୋଟିଏ ଥାଏ । ପୂର୍ଣ୍ଣ ମହାନ୍ତି ତତ୍ପର ଯାଦବ ପଟ୍ଟନାୟକ ମଧ୍ୟ ବ୍ୟସ୍ତରେ ଥାଆନ୍ତି ।)

ଯାଦବ : ବୁଝିଲ ଅର୍ଦ୍ଧଚନ୍ଦ୍ର ।

ପୂର୍ଣ୍ଣଚନ୍ଦ୍ର : ଉଁ-ହୁଁ, ଭୁଲ୍ ହୋଇଗଲା ।

ଯାଦବ : ଭୁଲ୍ ?

ପୂର୍ଣ୍ଣ : ପୂ ର୍ଣ୍ଣ ଚ ନ୍ଦ୍ର

ଯାଦବ : ହଁ ହେ ସେହି ଏକା କଥା ।

ପୂର୍ଣ୍ଣ : ଏକା କଥା ? ମୋ ନାଁ ପୂର୍ଣ୍ଣଚନ୍ଦ୍ର - ମୋତେ କହିବ ଅର୍ଦ୍ଧଚନ୍ଦ୍ର ପୁଣି କହୁଛ ଏକା କଥା ।

ଯାଦବ : ଜାଣ ଅର୍ଦ୍ଧଚନ୍ଦ୍ର

ପୂର୍ଣ୍ଣ : କିଛି ଜାଣେନି ।

ଯାଦବ : ଅର୍ଦ୍ଧଚନ୍ଦ୍ର

ପୂର୍ଣ୍ଣ : ଜମା ଶୁଣିବିନି ।

ଯାଦବ : ଆଶ୍ଚର୍ଯ୍ୟ ।

ପୂର୍ଣ୍ଣ : ମୋ ନାମ ପୂର୍ଣ୍ଣଚନ୍ଦ୍ର ମହାନ୍ତି ।

ଯାଦବ : ହଉ ହେଲା - ତୁମେ ମୋର କିଏ ?

ପୂର୍ଣ୍ଣ : ତମେ କ'ଣ ଜାଣିନ ?

ଯାଦବ : ହଁ ଜାଣିଛି ବୋଲି ତ - ତୁମକୁ ପୂର୍ଣ୍ଣଚନ୍ଦ୍ର ନ କହି ଅର୍ଦ୍ଧଚନ୍ଦ୍ର କହୁଛି ।

ପୂର୍ଣ୍ଣ : ମୁଁ ମାନୁଛି, ତୁମେ ଯେତେବେଳେ ମୋ ବାପାଙ୍କ ବଡ଼ଜୋଇଁ ମୋ ସହିତ କେବେ କେମିତି ପରିହାସ କରିପାର । ହେଲେ ମୋ ପିତୃଦତ୍ତ ନାଆଁଟାକୁ ବିକୃତ କରିବାର କୌଣସି ଅଧିକାର ତୁମର ନାହିଁ ।

ଯାଦବ : ହଉ ହେଲା, ଆଗକୁ ଚାଲ ।

ପୂର୍ଣ୍ଣ : ମନେରଖ ଭାଇନା - ମୁଁ ଆଜି ଯୋଉ experimentalର ଯୋଜନା ପ୍ରସ୍ତୁତ କରିଛି - ସେଥିରେ ଯଦି ସାରା ଯୁବସମାଜର ଏକ ବୈପ୍ଳବିକ ପରିବର୍ତ୍ତନ ନ ଆସିବ, ତାହା ହେଲେ ମୋତେ କହିବ ।

ଯାଦବ : କିନ୍ତୁ ତୁମେ ତ ଜାଣ ଅର୍ଦ୍ଧଚନ୍ଦ୍ର

ପୂର୍ଣ୍ଣ : ପୂର୍ଣ୍ଣଚନ୍ଦ୍ର

ଯାଦବ : ହଉ ହେଲା । ତମେ ପୂର୍ଣ୍ଣଚନ୍ଦ୍ର । କିନ୍ତୁ ଯାଦବ ପଟ୍ଟନାୟକ I.A.S. ଜୋଇଁ ନ ପାଇଲେ ତୁମେ ସେହି ଅର୍ଦ୍ଧଚନ୍ଦ୍ର ହୋଇ ରହିଯିବ ।

ପୂର୍ଣ୍ଣ : ଏଇଟାକୁ ଗୋଟେ challange ବୋଲି ଧରିନେବି ତ ?

ଯାଦବ : ନିଶ୍ଚୟ ।

ପୂର୍ଣ୍ଣ : ଦେଖିବେ ଭାଇନା – ଆଜି ଯୋଉ Interviewର ଆୟୋଜନ ହେଉଛି । ସେଥିରେ ଯଦି ଶହଶହ I.A.S. ଲାଇନରେ ଛିଡ଼ା ନ ହେବେ । ମୋତେ କହିବେ । ତା'ଛଡ଼ା ସିଂହଦ୍ୱାର ନିକଟରେ ଯୋଉ ଯୌତୁକର ଲମ୍ବା ପ୍ରଦର୍ଶନୀ ମଣ୍ଡପ ଖୋଲା ଯାଇଛି । ତା'ର ଆକର୍ଷଣ କମ୍ କି ?

ଯାଦବ : ହେଲା । ତୁମ କଥା ଠିକ୍ ଯେ – ହେଲେ ଏ ସହରରେ କିନ୍ତୁ ଖଳଲୋକର ଅଭାବ ନାହିଁ ।

ପୂର୍ଣ୍ଣ : ଆମକୁ ବି ରାଜନୀତି କରି ଆସେ । ଆମକୁ ବି ଦାଦାଗିରି କରି ଆସେ । କିନ୍ତୁ ବାହାଘର ଭଳି ଏକ ପବିତ୍ର ଅନୁଷ୍ଠାନ ଭିତରେ ଆମେ କୌଣସିମତେ ରାଜନୀତି ପଶେଇ ଦେବୁନି କି ସନ୍ତ୍ରାସବାଦକୁ ପ୍ରଶ୍ରୟ ଦେବୁନି । ଦୃଢ଼ତାର ସହିତ ଆମ ଝିଅ ବାହାଘର ଭଳି ଏକ ଜାତୀୟ ସମସ୍ୟାର ଆମେ ଉଚିତ ମୁକାବିଲା କରିବୁ ।

ଯାଦବ : (ତାଳିମାରି) ବାଃ ଅର୍ଦ୍ଧଚନ୍ଦ୍ର, ବାଃ ।

ପୂର୍ଣ୍ଣ : ଓହୋ – ଏଇଠି ତମେ ରହିଲେ । ସବୁ ସମସ୍ୟା ଓଲଟପାଲଟ ହେଇଯିବ ।

ଯାଦବ : ମୁଁ ରହିଲେ ସବୁ ସମସ୍ୟା ଓଲଟପାଲଟ ହେଇଯିବ ?

ପୂର୍ଣ୍ଣ : ଆଉ ତମ ପାଟିରେ ତ ପୂର୍ଣ୍ଣଚନ୍ଦ୍ର ପଶିବନି କାମ ପୂର୍ଣ୍ଣହେବ କେମିତି ?

ଯାଦବ : ଓହୋ କଥା ଯାଇ ସେଠି । ହେଲା ହେଲା ପୂର୍ଣ୍ଣଚନ୍ଦ୍ର, ମେଘ ଉଠେଇଲାଣି ଯେତେବେଳେ ବର୍ଷା ତ ନିଶ୍ଚୟ ହେବ ।

ପୂର୍ଣ୍ଣ : ଏବଂ ଏହି ପୂର୍ଣ୍ଣଚନ୍ଦ୍ର ମହାନ୍ତିର ମସ୍ତିଷ୍କରୁ ନିର୍ଗତ New formula ଅନୁଯାୟୀ, ଆଜି ତ ସ୍ୱୟମ୍ବରରେ ବର ବଛା ଯିବ ଏବଂ ସଙ୍ଗେସଙ୍ଗେ ବର ଆଦି ବେଦୀରେ ବସିବ । ହାତଗଣ୍ଠି ପଡ଼ିବ, ଶଙ୍ଖ ହୁଳହୁଳି ବାଜିବ । ବାସ ସବୁ କାମ ଶେଷ । ତେଣୁ ବର ଖସିଯାଇ ବାହାଘର ଭାଙ୍ଗିଯିବାର ପ୍ରଶ୍ନ ହିଁ ନାହିଁ ।

ଯାଦବ : ଏତେ ବୁଦ୍ଧିରେ କାମ ସବୁ ଯେତେବେଳେ ହେଲାଣି ବାହାଘର ନିଶ୍ଚୟ ହେବ ।

ପୂର୍ଣ୍ଣ : ବେଦୀ ପରା ସଜା ସରିଲାଣି ।

ଯାଦବ : ପୂଜାରୀମାନେ ଚୁଲିରେ କାଠ ସଜାଡ଼ି ବସିଛନ୍ତି ।

ପୂର୍ଣ୍ଣ : ଦୋ ତାଲା ଉପରେ ଢୋଲ, ମହୁରୀ ସବୁ ପ୍ରସ୍ତୁତ ।

ଯାଦବ : ନର ଭଣ୍ଡାରୀ ପାଣିକୁମ୍ଭ ଧରି ପଇଁତରା ମାରୁଛି ।

ପୂର୍ଣ୍ଣ : ଉସମାନ ମିଆଁ, ଗଛରେ ଖାସି ବାନ୍ଧି କଟୁରୀ ଘସୁଛି ।

ଯାଦବ : ବନ୍ଧୁବାନ୍ଧବ ବରକନ୍ୟାଙ୍କୁ ଆଶୀର୍ବାଦ ଦେବାକୁ ବେଶ ହେଲେଣି ।

ପୂର୍ଣ୍ଣ : ଆଉ କିଛି ସମୟ ପରେ ନିମନ୍ତ୍ରିତ ଅତିଥିମାନେ ଆସି ପହଞ୍ଚି ଯିବେ ।

ଯାଦବ : ସମୟ ତ ହେଇଗଲା –

ପୂର୍ଣ୍ଣ : ବରମାନେ ଏବେ ଧାଡ଼ି ବାନ୍ଧିବେ –

ଯାଦବ : ଶହ ଶହ ହଜାର ହଜାର

ପୂର୍ଣ୍ଣ : ହେଲେ ହାତୀ, ଜଣକ ମୁଣ୍ଡରେ ସୁନାକଳସ ଢାଳିବ ।

ଯାଦବ : ଆଉ ସେହି ଜଣକ I.A.S.

ପୂର୍ଣ୍ଣ : ମୀତା ଆମର I.A.S.ବର ପାଇବେ ।

ଯାଦବ : ମୋ ଜ୍ୱାଇଁ କଲେକ୍ଟର ।

ପୂର୍ଣ୍ଣ : ଗୋଟେ ଜିଲ୍ଲାର ମାଲିକ ।

ଯାଦବ : ଏ ଯୁଗର ରାଜା ।

ପୂର୍ଣ୍ଣ : ରାଜା ନୁହଁ - ମହାରାଜ

ଯାଦବ : ଝିଅ ମୋର ରାଣୀ ବନିଯିବ ।

ପୂର୍ଣ୍ଣ : ଆଉ, ମୋ ପାଓ୍ୱାର ବି ଶହେଗୁଣ ବଢ଼ିଯିବ ।

(ପ୍ରବେଶ କଲା ରମ୍ମୁ)

ରମ୍ମୁ : ଆପଣମାନେ କ'ଣ ବିଶ୍ୱାସ କରୁଛନ୍ତି ଯେ ଆପଣଙ୍କ ଭାଷାରେ I.A.S.ଅଫିସର୍‌ମାନେ ମୀତା ପାଇଁ ଲାଇନ ଦେବେ ?

ଯାଦବ : କେବଳ ମିତା ପାଇଁ ନୁହଁ, ମୀତା ପାଇଁ ଉଦ୍ଦିଷ୍ଟ ଯୌତୁକ ପାଇଁ ତଥା ଏହି ଯାଦବ ପଟ୍ଟନାୟକର ଅଚଳାଚଳ ସମ୍ପତ୍ତି ପାଇଁ । କେତେ କେତେ I.A.S.ନିଶ୍ଚୟ ଆଗେଇ ଆସିବେ ।

ରମ୍ମୁ : ଏଇଟା ଆପଣଙ୍କର ଭୁଲ୍ ଧାରଣା ବାପା - ସାମାନ୍ୟ ସଂପତ୍ତି ଲୋଭରେ ଜଣେ I.A.S. officer କେବେ ତା'ର ଆତ୍ମସମ୍ମାନକୁ ବଳି ଦେଇପାରିବନି ।

ଯାଦବ : ଟଙ୍କାର ଶକ୍ତି ତୁ ଜାଣିନୁ ।

ରମୁ : ଟଙ୍କା ନେଇ ବିଜନେସ୍ କରାଯାଇ ପାରେ । ହେଲେ ମଣିଷ କିଣାଯାଇ ପାରେନା ।

ପୂର୍ଣ୍ଣ : ଓହୋ - ବାପା ରମୁ - ତୁ ତ ଜାଣୁ - I.A.S. ପ୍ରତି ବାପାଙ୍କର କେତେ ଲୋଭ ।

ଯାଦବ : ପୁଅ ତ ହେଲାନି - ଯଦି ଜୋଇଁଟିଏ ପାଇଯାଏଁ ।

ରମୁ : ଏସବୁ ତୁମମାନଙ୍କର ଭୁଲ୍ ଧାରଣା ।

ପୂର୍ଣ୍ଣ : ତୁ ଜମା ବ୍ୟସ୍ତ ହଅନା ରମୁ ।

ରମୁ : ତୁମମାନଙ୍କର ଯୋଜନା ଦେଖିଲେ ଯେ କେହି ଲୋକ ବ୍ୟସ୍ତ ହୋଇପଡ଼ିବ ମାମୁ ।

ପୂର୍ଣ୍ଣ : ଆଉ ଏ ଯୋଜନା - ଏକ ଦେଖିଲା ଭଳି ଯୋଜନା ।

ରମୁ : ଧନ୍ୟ ତୁମ ଯୋଜନା ମାମୁ । ବର ବଛା ସରିନି । ଅଥଚ ବ୍ରାହ୍ମଣ ମନ୍ତ୍ର ପଢ଼ିଲେଣି । ପୂଜାରୀ ରନ୍ଧାବଢ଼ା କଲେଣି । ବନ୍ଧୁ ଅତିଥି ବରକନ୍ୟାଙ୍କୁ ଆଶୀର୍ବାଦ ଦେବାପାଇଁ ପ୍ରସ୍ତୁତ ହେଲେଣି ।

ପୂର୍ଣ୍ଣ : ଆଉ ବର ବାଛିବାଟା ଆମ ହାତର କଥା । ତାହା ମଧ କେତେ ମିନିଟ୍‌ର interview ମଧ୍ୟରେ । ଅନେକ ମଧ୍ୟରୁ ଏକକୁ ବାଛିବା କ'ଣ କଷ୍ଟ ?

ଯାଦବ : ଏତେସବୁ ଯୋଜନା କ'ଣ ଦିନକର ନାଁ ମାସକର ସମ୍ଭବ ?

ପୂର୍ଣ୍ଣ : ଆରେ ଏଇ ଝିଅ ବାହାଘର ପାଇଁ ଆମକୁ ବର୍ଷେ ହେଲା ରୀତିମତ ଯୋଜନା କରିବାକୁ ପଡ଼ିଛି ।

ରମୁ : ଧରନ୍ତୁ - ଯଦି ବର ବଛା ହୋଇ ନ ପାରିଲା ? ଲୋକହସା ହେବ ତ ?

ପୂର୍ଣ୍ଣ : କାହିଁକି ?

ଯାଦବ : ମୁଁ କ'ଣ ଖାଲି ହାତରେ ବସି ବର ବାଛୁଛି ?

ପୂର୍ଣ୍ଣ : ରମୁ, ତୁ ପିଲାଲୋକ । ତୁ ବ୍ୟସ୍ତ ହଅନା । ଆଉ ଅଳ୍ପ ସମୟ ମଧ୍ୟରେ ନିଶ୍ଚିତ ଭାବରେ ମୀତା ପାଇଁ ବର ବଛା ସରିଥିବ ।

ଯାଦବ : ତାହା ପୁଣି I.A.S. ବର ।

ରମୁ I.A.S. କେବେ ଆସିବେନି । ଆଉ ଯଦିବା କେହି ଆସନ୍ତି, ତାହାହେଲେ ଯୌତୁକ ଲୋଭରେ ଆସିବେ । ତା' ଦ୍ୱାରା ମୀତା ଜୀବନ ସୁଖମୟ ହୋଇପାରିବନି ।

ଯାଦବ : ଜଣେ I.A.S. ଅଫିସରର ସ୍ତ୍ରୀ ହେବାଠାରୁ ସୁଖ ଆଉ କ'ଣ ଥାଇପାରେ ? ତା'ଛଡ଼ା ମୀତା ମୋର୍ ଏକମାତ୍ର ଝିଅ, ତା'ର ଭବିଷ୍ୟତ ବିଷୟରେ ମୁଁ ବେଶ୍ ସଚେତନ ।

ପୂର୍ଣ୍ଣ : ଆରେ ରମୁ ତୁ ଯାଆ । ଗେଷ୍ଟମାନଙ୍କର ରିସେପ୍‌ସନ୍ କଥା ବୁଝ ।

ରମୁ : ହଁ, ପରିବାରର ଜଣେ ଶୃଙ୍ଖଳିତ ସଭ୍ୟ ହିସାବରେ ମୋ କର୍ତ୍ତବ୍ୟ ଅବଶ୍ୟ କରିବି । କିନ୍ତୁ ମୁଁ ମୀତାର ବଡ଼ଭାଇ । ତା'ର ଦୁଃଖ ମୋ ପକ୍ଷେ ଅସହ୍ୟ । (ପ୍ରସ୍ଥାନ)

ଯାଦବ : ପୂର୍ଣ୍ଣଚନ୍ଦ୍ର, ଶୁଣ ! ବରବଛା interviewsର ସମସ୍ତ ଦାୟିତ୍ୱ ତୁମକୁ ମୁଁ ଦେଇଗଲି ।

ପୂର୍ଣ୍ଣ : ମୋତେ ?

ଯାଦବ : ହଁ ତମକୁ ! ରମୁର Challangeକୁ face କରିବା ପାଇଁ ମୋତେ ଅନ୍ୟ ସମସ୍ତ ଦାୟିତ୍ୱ ବୁଝିବାକୁ ପଡ଼ିବ ।

ପୂର୍ଣ୍ଣ : ହଁ ଯେ କିନ୍ତୁ interviews ଦାୟିତ୍ୱ ଦେବାଟା ଟିକେ ବେଶୀ ଦାୟିତ୍ୱ ପଡ଼ିଗଲା ।

ଯାଦବ : ଶୁଣ ତୁମେ ମୀତାର ମାମୁ । ତୁମ ଉପରେ ବାପା, ମାଆ ଉଭୟଙ୍କର ପ୍ରଭାବ ରହିଛି । ତେଣୁ ମୀତାର ମନଲାଖି ସାଥୀଟିଏ ତୁମେ ହିଁ କେବଳ ବାଛି ପାରିବ ।

ପୂର୍ଣ୍ଣ : ଅବଶ୍ୟ ସେ ବିଷୟରେ ମୋର ଅଭିଜ୍ଞତା ହିଁ ମୋତେ ସାହାଯ୍ୟ କରିବ ।

ଯାଦବ : ଯେତେ ଶୀଘ୍ର ପାର interviews ଶେଷକର ।

ପୂର୍ଣ୍ଣ : ନିଶ୍ଚୟ ଯେ - କିନ୍ତୁ -

ଯାଦବ : ଅର୍ଦ୍ଧଚନ୍ଦ୍ର !

ପୂର୍ଣ୍ଣ : ହଁ ମୁଁ କରିଦେବି । ତମେ ଯାଅ ଭାଇନା ।

ଯାଦବ : ହେଲେ ମନେରଖ । ମୋର କେବଳ I.A.S. ପାତ୍ରଟିଏ ଦରକାର । (ପ୍ରସ୍ଥାନ)

ପୂର୍ଣ୍ଣ : I.A.S. ବରବଛା Interview ଜୀବନ ସଉଦାର ଦାୟିତ୍ୱ । କିଛି କମ୍ ନୁହଁ । କିନ୍ତୁ I.A.S. officerଙ୍କୁ Interveiw କରିବା କ'ଣ... ତଥାପି ମୁଁ ପାରିବି । ମୋ ଦ୍ୱାରା ସବୁ ସମ୍ଭବ । ଏଥିରେ ମୋର ମାନସମ୍ମାନର ପ୍ରଶ୍ନ ଜଡ଼ିତ । ଅଧିକା କଥା ଜମା କହିବିନି । ଟିକିଏ gravity maintain କରିବାକୁ ପଡ଼ିବ । ଲମ୍ବୋଦର - ଲମ୍ବୋଦର । (ଆସିଛି ଚାକର ଲମ୍ବୋଦର ଖାଇ ଖାଇ)

ଲମ୍ବୋଦର : ମାମୁ ଆଜ୍ଞା – ମୋତେ ଡାକିଲେ ?

ପୂର୍ଣ୍ଣ : ହଁ ତୋତେ ଡାକିଲି । ହୋଇରେ ଲମ୍ବୋଦର ଆଜି ପରା ଦିନରେ ତୋର ଏ ଲମ୍ବା ଉଦରଟାକୁ ଟିକିଏ ସଟ୍‌କଟ୍ କରିଦେଲେ ହୁଅନ୍ତା କି ?

ଲମ୍ବୋଦର : କି କଥା କହୁଛନ୍ତି ମାମୁ ଆଜ୍ଞା । ଆଜି ପରା ଦେଇଙ୍କ ବାହାଘର ଆଉ ଏଭଳି ଦିନରେ ଯଦି ମୋ ଉଦରଟା ଫାଙ୍କା ପଡ଼ିଯିବ ଆଉ ଖାଇବି କୋଉଦିନ ?

ପୂର୍ଣ୍ଣ : ତୁ ତ ଖାଇବାରେ ଲାଗିଲୁ । ଏଣେ କାମ ସବୁ କରିବ କିଏ ?

ଲମ୍ବୋଦର : ମାମୁ ଆଜ୍ଞା – ମୁଁ କ'ଣ ବସିଛି ?

ପୂର୍ଣ୍ଣ : ଦେଖ ଲମ୍ବୋଦର, ଏବେ ଫାଜିଲାମି ଛାଡ଼ି କାମ କର ।

ଲମ୍ବୋଦର : କହୁ ନାହାନ୍ତି – ସାଙ୍ଗେ ସାଙ୍ଗେ କାମ ସରିଯିବ ।

ପୂର୍ଣ୍ଣ : ତୁ ତ ଜାଣୁ ବର ଛଡ଼ା ଦାୟିତ୍ୱ ମୋ ଉପରେ ।

ଲମ୍ବୋଦର : କ'ଣ କହିଲେ ମାମୁ ଆଜ୍ଞା – ଆପଣ ବର ବାଛିବେ ?

ପୂର୍ଣ୍ଣ : ହଁ – କ'ଣ ମନକୁ ପାଉନି ?

ଲମ୍ବୋଦର : ମୋ ମନକୁ ପାଇଲେ କ'ଣ ହବ । ବାବୁଙ୍କ ମନକୁ ପାଇବଟି ?

ପୂର୍ଣ୍ଣ : ସିଏ ତ ନିଜେ ମୋତେ ଏ ଦାୟିତ୍ୱ ଦେଇଛନ୍ତି ।

ଲମ୍ବୋଦର : ତା' ହେଲେ ଠିକ୍ ଅଛି ।

ପୂର୍ଣ୍ଣ : ଲମ୍ବୋଦର, ଦେଖିଲୁ, ଗେଟ୍ ପାଖରେ କେହି ବର ଆସିଲେଣି କି ?

ଲମ୍ବୋଦର : ମୁଁ କେମିତି ଦେଖିବି ମାମୁଁ ଆଜ୍ଞା ମୋର କ'ଣ ସେ ପାଖରେ duty ଅଛି ? ମୋର ପରା ରୋଷେଇ ଘରେ duty ।

ପୂର୍ଣ୍ଣ : ଆରେ ମୂର୍ଖ, ତୁ ସେ duty ଛାଡ଼ି ଦେଖ - ବରମାନେ ଯଦି ବିରକ୍ତିରେ ଫେରି ଯାଆନ୍ତି, ତା'ହେଲେ କଥା ଶେଷ ।

ଲମ୍ବୋଦର : କ'ଣ କହିଲ, ଖସି ଯିବେ ? ପୁଣି ମୋ ଆଖିରୁ ।

ପୂର୍ଣ୍ଣ : ବାପା ଲମ୍ବୋଦର - ଆଜିକାଲି ବରମାନେ ବଡ଼ ଖସରାରେ...

ଲମ୍ବୋଦର : ଚେଙ୍ଗମାଛ ପରିକା ମାଡ଼ିତ ବସିବି ।

ପୂର୍ଣ୍ଣ : ଆରେ ନା ନା - ସେ ପରା ଆମର ଜ୍ୱାଇଁ । ତାଙ୍କୁ କ'ଣ ଅସମ୍ମାନ କରିବା ଉଚିତ ହେବ ? ଯାଆ - ଦେଖ କେତେଜଣ ଆସିଲେଣି ତାଙ୍କ ରୂପ, ଗୁଣ ବିଷୟରେ କିଛି ସମ୍ବାଦ ଆଣ ।

ଲମ୍ବୋଦର : ଯାଉଛି, ଆପଣ ଯେତେବେଳେ କହୁଛନ୍ତି, ନ ଯାଇ ଚାରା କାହିଁ ?

(ଲମ୍ବୋଦର ଯାଏ ପୂର୍ଣ୍ଣ ଉଠି ଏପଟ ସେପଟ ହୁଏ)

ପୂର୍ଣ୍ଣ : ନା - ଯୋଜନାରେ କୋଉଠଇ ତ୍ରୁଟି ନାହିଁ । ସବୁ ଚାଲିଛି । ଏଇଥର ଯଦି Success ହୋଇଯାଏ, ଗୋଟେ ରେକର୍ଡ଼ ହେଇଯିବ । ସାରା ସହରରେ ଗୋଟେ ହଲ୍ଲା ହେଇଯିବ ।

(ଆସେ ଜଣେ ଟେଲର)

ଟେଲର : ସଲାମ ସାବ୍ ।

ପୂର୍ଣ୍ଣ : ସଲାମ । ଆପ ? (ଦେଖି)ମାନେ ତୁମ ? ତୁମ୍ କୋନ ହୋ ? I mean କୋଉ I.A.S. ଅଫିସର୍ କା ନୌକର ?

ଟେଲର : ଜି ସାବ୍ । ନେହିଁ ନେହିଁ ସାବ୍ । ମେ କିସିକା ନୌକର ନେହିଁ । କି ମେରାଭି କୋଇ ନୌକର ନେହିଁ । ମେ ମଡ଼ର୍ଣ ମୋବାଇଲ୍ ଟେଲର କା ମସୁର ଟେଲର ମାଷ୍ଟର ହୁଁ ।

ପୂର୍ଣ୍ଣ : ଟେଲର ମାଷ୍ଟର ? ଇଧର କୋଇ ଟେଲର୍ ମାଷ୍ଟର କେ ଲିଏ vacancy ନେହିଁ । ତୁମ୍ ଯା' ଶକତେ ହୋ ।

ଟେଲର : ଜି ସାବ୍ । ମୁଝେ ମାଲୁମ ସାବ୍ । ଲେକିନ ସାବ୍ ୟାହାଁ ଆଜ ଯୋ ଇନ୍ତେହାନ ହୋନେ ବାଲା ହେ ଇସ୍‌ମେ ଯୋ ଫାଷ୍ଟ ବନେଗା ଉସ୍‌କେ ଲିଏ ତୋ କୁଛ୍ ଡ୍ରେସ୍ କପଡ଼ା ବନାନା ହେ ।

ପୂର୍ଣ୍ଣ : ହଁ ୟେ ତୋ ହୋଗା, ଲେକିନ...

ଟେଲର : ଖାସ୍ ଆପକେ ଖିଜ୍‌ମତ କେ ଲିଏ, ମେ ହାଜିର ହୁଁ ଜନାବ ।

ପୂର୍ଣ୍ଣ : ୟେତ ମୁଝେ ମାଲୁମ ହୋ ଗୟା, ଲେକିନ ଦୁଲ୍ହା କେ ଲିଏ ଏକ ପେୟାର ଡ୍ରେସ୍ ବନାନେମେ କିତନେ ବକ୍‌ତ ଲଗେଗା ?

ଟେଲର : ଦୁଲା କା ଡ୍ରେସ ? ୟେ ତ ମେରା ବାୟଁ ହାତକା କରିସ୍‌ମା ଇସ୍ ଟାଉନ ମେ ଜିତନେ ଜାନେମାନେ ଟେଲର ହେ କିସକୋ ଏକ ମଇନା ସେ କମତି ନେହି ଲଗେଗା ଅଗର ମେରା ହାତ ଲଗଯାଏ ତୋ ସମଝୋ ହୋ ଗୟା । ଆପ advance ବୁକ୍ କର ଦିଜିଏ ଓ୍ୱକ୍ତ ପର ହିଁ ମିଲ ଯାଏଗା ।

ପୂର୍ଣ୍ଣ : advance ? ଠିକ୍ ହେ, ୟେ ରହା ତୁମ୍‌ହାରା advance (ଦେଲେ) ମଗର କପଡ଼ା ଔର କଇଁଚି ପକଡ଼ କର ବୈଠନା ।

ଟେଲର : (ନେଉ, ନେଉ) ୟୁଁ ବେଠଗୟା । ବରାତ ଆ ଯାଏଗା କାମ୍ ସୁରୁ ହୋ ଯାଏଗା ଔର ଦୁଲା ବୈଠ ଯାଏଗା କାମ ଖତମ୍ ହୋ ଯାଏଗା । (ଯାଏ)

ପୂର୍ଣ୍ଣ : ଭୁଲି ଯାଇଥିଲି ହେ - ବରର ଡ୍ରେସ୍‌ଟା ନିହାତି ଦରକାର । ଯାହା ହେଉ ଭଗବାନ ମନେ ପକାଇ ଦେଲେ ।

(ଆସନ୍ତି ପଣ୍ଡିତ)

ପଣ୍ଡିତ : କ'ଣ କିହେ ମହାନ୍ତିଏ - ବେଳ ଆସି ଅବେଳ, ହେଲା । ପଥ ବ'ରଣ ହେବ ଯେ - ଶୀଘ୍ର ବର ପଠାଅ ।

ପୂର୍ଣ୍ଣ : ଓ ହୋ ପଣ୍ଡିତେ ଆଉ ଟିକିଏ ଅପେକ୍ଷା କରନ୍ତୁ ।

ପଣ୍ଡିତ : ଆଉ ଦୁଇ କି ତିନି ଦଣ୍ଡ ଅଛି । ଲଗ୍ନ ଆସିଯିବ ।

ପୂର୍ଣ୍ଣ : ଗ୍ରହାଚାର୍ଯ୍ୟଙ୍କୁ କୁହନ୍ତୁ ପାଞ୍ଜି ଧରି ସତର୍କ ଥିବେ । ମୁଁ ବର ସଙ୍ଗେସଙ୍ଗେ ପଠାଉଛି ।

(ଲମ୍ବୋଦର ପ୍ରବେଶ)

ଲମ୍ବୋଦର : ଆଜ୍ଞା ଆସିଗଲେ । ଆସିଗଲେ ଆଜ୍ଞା ।

ପୂର୍ଣ୍ଣ : ଏଁ ଆସିଗଲେ ? ପଣ୍ଡିତେ । ଓହୋ ଆପଣ ଯାଆନ୍ତୁ ।

ପଣ୍ଡିତ : ମୁଁ ଯାଉଛି ଝିଅ ମଙ୍ଗୁଳଟା ଆରମ୍ଭ କରିଦିଏ ।

ପୂର୍ଣ୍ଣ : ଆରମ୍ଭ 'କରିବେ ? ଶୀଘ୍ର ଶେଷ କରନ୍ତୁନା ।

ପଣ୍ଡିତ : ଓହୋ ମହାନ୍ତିଏ, ଆପଣ ଜମା ବ୍ୟସ୍ତ ହୁଅନ୍ତୁନି । ମୋ ପାଖରେ ଅତି ସଂକ୍ଷିପ୍ତ ମନ୍ତ୍ର ବି ଅଛି ।

ପୂର୍ଣ୍ଣ : ଯଦି ପାରନ୍ତି ମନ୍ତ୍ରଗୁଡ଼ାକୁ ଆଉ ଟିକିଏ ସଂକ୍ଷିପ୍ତ କରିଦିଅନ୍ତୁ ।

ପଣ୍ଡିତ : ବ୍ୟସ୍ତ ହୁଅନ୍ତୁନି, ଦରକାର ପଡ଼ିଲେ ସେ ଚେଷ୍ଟା ବି କରିବି ।(ପ୍ରସ୍ଥାନ)

ଲମ୍ବୋଦର : ଆଜ୍ଞା ମୋତେ ଆଦେଶ କରନ୍ତୁ ।

ପୂର୍ଣ୍ଣ : ଓହୋ – ଲମ୍ବୋଦର ତୁ ଯାହା ଭାବୁଛୁ କରିଯାଅ –

ଲମ୍ବୋଦର : ବରବାବୁଙ୍କୁ ଡାକି ଆଣିବି ?

ପୂର୍ଣ୍ଣ : ବରବାବୁ ? ଆରେ ଆଗେ ସିଲେକସନ୍ ସରୁ । ଆରେ ଲମ୍ବୋଧର କେତେଜଣ ଆସିଛନ୍ତି ?

ଲମ୍ବୋଦର : ଆଜ୍ଞା କନ୍ୟା ତ ଜଣେ – ବର କ'ଣ ବାରଜଣ ଆସିବେ ?

ପୂର୍ଣ୍ଣ : ଆବେ ବାରଜଣ କ'ଣ କହୁଛୁ ? ବାରଶହ ଜଣ ଆସିବେ ?

ଲମ୍ବୋଦର : ଆଜ୍ଞା କନ୍ୟା ତ ଜଣେ – ବର କ'ଣ ବାରଜଣ ଆସିବେ ?

ପୂର୍ଣ୍ଣ : ଆବେ ବାରଜଣ କ'ଣ କହୁଛୁ ? ବାରଶହ ଜଣ ଆସିବେ ?

ଲମ୍ବୋଦର : ମାମୁ ଆଜ୍ଞା ବାରଶହ ଜଣ ଆସିବେ ? ଏଠି କିସ ଶୁଆଘର ହବକି ?

ପୂର୍ଣ୍ଣ : ଦେଖିବୁ ଲମ୍ବୋଦର ଯଦି ଆଜି ଏ ସହରଟା ପୂର୍ଣ୍ଣ ମହାନ୍ତି ନାଁରେ ଚମକି ନ ଯିବ ତା' ହେଲେ କହିବୁ ।

ଲମ୍ବୋଦର : ହେଲେ ତ ସେ ଗେଟ୍ ପାଖରେ ଜଣେ ତ ନୁଙ୍ଗପୁଙ୍ଗ ହଉଛି ।

ପୂର୍ଣ୍ଣ : ଜ-ଣେ- ?

ଲମ୍ବୋଦର : ହଁ ଜଣେ ତ ସେ ଜିନିଷ ତାଲିକାକୁ ଘୂରି ଘୂରି ପଢୁଛି । କେତେବେଳେ କାର୍‌ରେ, କେତେବେଳେ ଟି.ଭି.ରେ କେତେବେଳେ ଫ୍ରିଜ୍‌ରେ ହାତ ମାରି ଦଉଛି ।

ପୂର୍ଣ୍ଣ : ତାଲିକା ପଢ଼ିଛି ତ ?

ଲମ୍ବୋଦର : ହଁ ପରା ।

ପୂର୍ଣ୍ଣ : ହା - I.A.S. ହେଇଥିବ ନିଶ୍ଚୟ, ନ ହେଲେ ଏ ବୁଦ୍ଧି କାହା ମୁଣ୍ଡରେ ବାହାରିବ, ଦେଖିବାକୁ କେମିତି ?

ଲମ୍ବୋଦର : ରଜା ପରି ।

ପୂର୍ଣ୍ଣ : ଚେହେରା ?

ଲମ୍ବୋଦର : ଦିବ୍ୟ ସୁନ୍ଦର ।

ପୂର୍ଣ୍ଣ : ଆଉ ରଙ୍ଗ ?

ଲମ୍ବୋଦର : ମୋ ରଙ୍ଗ ପରି ।

ପୂର୍ଣ୍ଣ : ଚଳିବ । ଯେତେହେଲେ ପୁଅ ପିଲା । ଆଉ ସ୍ୱାସ୍ଥ୍ୟ ?

ଲମ୍ବୋଦର : ଟିକିଏ ପତଳା ।

ପୂର୍ଣ୍ଣ : ପତଳା ? ମୋଟା ଥିବ । ପାଠ ପଢ଼ି ପଢ଼ି ହୁଏତ ପତଳା ହେଇଯାଇ ଥିବ । ବାହାଘର ପରେ ବଦଳି ଯିବ । ଯାଆ ଡାକିଦେ-

ଲମ୍ବୋଦର : ଡାକି ଦେବି ?

ପୂର୍ଣ୍ଣ : ଯାଆ ଶୀଘ୍ର ଡାକିଦେ - ହଁ ଗଲାବେଳେ ଡାକ୍ତର ବାବୁ । ଆଉ ପଣ୍ଡିତେଙ୍କୁ ମୋ ପାଖକୁ ପଠାଇ ଦେବୁ ।

ଲମ୍ବୋଦର : ଆଜ୍ଞା - (ପ୍ରସ୍ଥାନ)

ପୂର୍ଣ୍ଣ : Candidate ଯେତେବେଳେ ଜଣେ, Interviewଟା ଟିକିଏ ସହଜ ହେବା ଆବଶ୍ୟକ ।

ଡାକ୍ତର : (ପ୍ରବେଶ) ମୋତେ ମନେ ପକେଇଲେ ମିଷ୍ଟର ମହାନ୍ତି । ମାନେ I mean do you remember me ?

ପୂର୍ଣ୍ଣ : ଦେଖନ୍ତୁ ଡାକ୍ତର ବାବୁ Candidate ଜଣେ । ତେଣୁ medical examin ବେଳେ ଆପଣ ଟିକିଏ କୋହଳ ନୀତି ଅନୁସରଣ କରିବେ ।

ଡାକ୍ତର : Don't worry, do not worry Mr. Mohanty I know every thing. ଧଳାକୁ କଳା କରିବା ଆଉ କଳାକୁ ଧଳା କରିବାର ମୋର ଅଭ୍ୟାସ ଅଛି । ଏ ଜାତୀୟ ସଂହତିର ସଂକଟ ସମୟରେ ମୁଁ medical science ସଂହତିର ସମ୍ମାନ ରକ୍ଷାକରି ଏଲୋପାଥି, ହୋମିଓପାଥି, ଆର୍ୟୁବେଦିକ ତଥା ତନ୍ତ୍ରଯନ୍ତ୍ରର ଅପୂର୍ବ ସଂହତି ନେଇ ଏ ମସ୍ତିଷ୍କକୁ ଅତି ଉର୍ବର କରି ରଖିଛି । ଖାସ୍ ଆପଣମାନଙ୍କ ଉପକାର ପାଇଁ ଖାଲି ଇସାରା ପାଇଲେ ମୁଁ ସିରିଞ୍ଜ ଲୋଡ଼୍ କରିବି ।

ପୂର୍ଣ୍ଣ : ତା'ର ସ୍ୱାସ୍ଥ୍ୟ ବିଷୟରେ ଆପତ୍ତି ଉଠାଇବେ ନାହିଁ ।

ଡାକ୍ତର : ଆଜ୍ଞା ମୁଁ ଠିକ୍ ବୁଝିଛି । ଦୂରରୁ ଦେଖି ମୁଁ ସବୁ examine କରି fitness certificate ଦେଇଦେବି ।

ପୂର୍ଣ୍ଣ : ଗ୍ରହାଚାର୍ଯ୍ୟଙ୍କୁ ଟିକିଏ hints ଦେଇଦେବେ ।

ଡାକ୍ତର : ଆମେ ସବୁ ଠିକ୍ କରିଦେବୁ । ଆପଣ ନିଶ୍ଚିନ୍ତ ଥାଆନ୍ତୁ । (ପ୍ରସ୍ଥାନ)

ଲମ୍ବୋଦର : (ବାହାର) ଆସନ୍ତୁ, ଆସନ୍ତୁ ବାବୁ ଆଜ୍ଞା । (ପ୍ରବେଶ) ଏଇ ଆସିଗଲେ ଆସିଗଲେ ଆଜ୍ଞା ।

ପୂର୍ଣ୍ଣ : ଆସିଗଲେ ?

ଲମ୍ବୋଦର : (ଭିତରକୁ ଚାହିଁ) ଆହା ଆସନ୍ତୁ, ଆସନ୍ତୁ, ଏଁ ଲାଜ କରନ୍ତୁନି ।

ପୂର୍ଣ୍ଣ : (ଗାମ୍ଭୀର୍ଯ୍ୟ) ଲମ୍ବୋଧର ।

ଲମ୍ବୋଧର : ମାମୁଁ ଆଜ୍ଞା -

ପୂର୍ଣ୍ଣ : ତୋ କାମ କ'ଣ ?

ଲମ୍ବୋଦର : ଆଜ୍ଞା -

ପୂର୍ଣ୍ଣ : ମୁଁ ପଚାରୁଛି ତୋ କାମ କ'ଣ ?

ଲମ୍ବୋଦର : ଆଜ୍ଞା ବରମାନଙ୍କୁ ଏ ଘରେ ପହଞ୍ଚେଇବା -

ପୂର୍ଣ୍ଣ : ତା' ପରେ ଏ ଘରୁ ବାହାରି ଯିବା ।

ଲମ୍ବୋଦର : ଭୁଲ୍ ହେଇ ଯାଇଛି ମାମୁଁ ଆଜ୍ଞା ।

ପୂର୍ଣ୍ଣ : ଠିକ୍ କର ।

ଲମ୍ବୋଦର : ଯାଉଛି ଆଜ୍ଞା । (ପ୍ର ସ୍ଥା ନ)

ପୂର୍ଣ୍ଣ : ଅପଦାର୍ଥ(ଦୂରକୁ ଦେଖି) ଆସନ୍ତୁ, ଆସନ୍ତୁ, Please, ଆସନ୍ତୁ, ଆସନ୍ତୁ (ବର ବେଶରେ ନଡ଼ିଆ, ଖିଲିକାଟି ଧରି ପାନ ଚୋବାଇ ଚୋବାଇ ଗନ୍ଧର୍ବ ହାସ୍ୟାସ୍ପଦ ଚେହେରା ।)

ପୂର୍ଣ୍ଣ : (ବିରକ୍ତିରେ) ଆପଣ ?

ଗନ୍ଧର୍ବ : ଶ୍ରୀଯୁକ୍ତ ଗନ୍ଧର୍ବ ସୁନ୍ଦର ମହାପଟ୍ଟନାଏକ ।

ପୂର୍ଣ୍ଣ : (ଦେଖିଲେ) ଆପଣ I.A.S. ନିଶ୍ଚୟ ।

ଗନ୍ଧର୍ବ : ହଁ, ହଁ, ନା, ନା, Sଟାକୁ କାଟି ଦିଅନ୍ତୁ ସାର୍ ।

ପୂର୍ଣ୍ଣ : ମାନେ I.A. ଏବେକାର ଭେଜାଲ ନୁହେଁ ସାରେ - ମୁଁ ଖାଣ୍ଟି I.A.

ଗନ୍ଧର୍ବ : ଆଜ୍ଞା – ମୋର ବୁଢ଼ାବାପା ଥିଲେ ମୋଗଲ ଅମଳର M.A.

ମୋ ବାପା ଥିଲେ ମରହଟ୍ଟା ଅମଳର B.A.

ଆଉ ମୁଁ ? ମୁଁ ବ୍ରିଟିଶ୍ ପିରିୟଡ଼ର I.A.

ପୂର୍ଣ୍ଣ : ଆଉ ତୁମ ପୁଅ ବୋଧହୁଏ ସ୍ୱାଧୀନ ଯୁଗର ମେଟ୍ରିକ୍ ?

ଗନ୍ଧର୍ବ : Exactly Sir, ଆପଣ ସବୁ ଜାଣନ୍ତି ।

ପୂର୍ଣ୍ଣ : କ'ଣ ହେଲା ତୁମର ପୁଅ ବି ଅଛନ୍ତି ?

ଗନ୍ଧର୍ବ : ପୁଅ ଅଛନ୍ତି ? ମାନେ ସାତ ପୁଅ ଅଛନ୍ତି ସାର ।

ପୂର୍ଣ୍ଣ : ଅଥଚ ତୁମେ ଅବିବାହିତ ?

ଗନ୍ଧର୍ବ : ନାହିଁ । ମୋର ତିନି ସ୍ତ୍ରୀ ଏବେ ତିନି ସ୍ଥାନରେ ସୁରକ୍ଷିତ ।

ପୂର୍ଣ୍ଣ : କିନ୍ତୁ ତୁମେ ଚତୁର୍ଥ ସ୍ଥାନରେ ବିବାହ ଆଶାରେ ଅଣ୍ଟା ଭିଡ଼ି ସଦର୍ପେ ଦଣ୍ଡାୟମାନ ।

ଗନ୍ଧର୍ବ : ଆଜ୍ଞା – ଏଇ ମୋର ସମ୍ପତ୍ତି ତାଲିକା । (ଗୋଟିଏ ତାଲିକା ବଢ଼ାଇଲେ ।)

ପୂର୍ଣ୍ଣ : (ଚମକି) ଆଁ ଏତେ ଲମ୍ବା ତାଲିକା ।

ଗନ୍ଧର୍ବ : ଆଜ୍ଞା ଇଏତ ସାମାନ୍ୟ । ଏଇଟା ଖାଲି ସୁନା ଅଳଙ୍କାରର ହିସାବ । ଟଙ୍କା, ସମ୍ପତ୍ତି, ଗାଡ଼ି, କୋଠାର ତାଲିକା ଅଲଗା ଅଛି ।

ପୂର୍ଣ୍ଣ : ଆଉ ଥାଉ । (ଡାକ୍ତର ଆସି ନିରୀକ୍ଷଣ କଲେ ।)

ଡାକ୍ତର : (ପୂର୍ଣ୍ଣ ହାତକୁ କାଗଜଟେ ବଢ଼ାଇଲେ) ଏଇ ନିଅନ୍ତୁ ମେଡ଼ିକାଲ ରିପର୍ଟ ।

ଗନ୍ଧର୍ବ : ମେଡ଼ିକାଲ ରିପର୍ଟ ? ଚେକ କଲେ କେତେବେଳେ ?

ଡାକ୍ତର : ସେ କଥା ମୋତେ ଜଣା ।

ପୂର୍ଣ୍ଣ : ଟିକିଏ ଭଲ କରି ଦେଖନ୍ତୁ ।

ଡାକ୍ତର : ଯଦିଓ ୟାଙ୍କର age nearing to sixty ତଥାପି ୟାଙ୍କ ଦେହରେ 90 percent ପୌରୁଷ ମହଜୁଦ ଅଛି ।

ପୂର୍ଣ୍ଣ : Age - 60 ?

ଡାକ୍ତର : ପରମାୟୁ ବିଷୟରେ ନିଃସନ୍ଦେହରେ ଗ୍ୟାରେଣ୍ଟି ଦିଆଯାଇ ପାରେ ।

ପୂର୍ଣ୍ଣ : ହାଇଟ୍ ବିଷୟରେ ?

ଡାକ୍ତର : ମିଲିଟାରୀ ମାପରେ ଏକଦମ ଠିକ୍ ।

ପୂର୍ଣ୍ଣ : ଓଜନ ?

ଡାକ୍ତର : ଆବଶ୍ୟକତା ଠାରୁ ବରଂ ବଳି ପଡ଼ିବ ।

ପୂର୍ଣ୍ଣ : ଡାକ୍ତର ବାବୁ ! ଟିକିଏ ଭଲ କି examine କରନ୍ତୁ ।

ଡାକ୍ତର : କ'ଣ ହେଲା ? ମୋ ପ୍ରତି faith ଆସୁନି ? ମୁଁ ଡକ୍ଟର କୁଳମଣି ସିଂ ଚୌଧୁରୀ M.B.B.S. M.D.. ଆୟୁର୍ବେଦ ରତ୍ନ । ଭେଷଜ ବିଶେଷଜ୍ଞ । ତନ୍ତ୍ରବିଶାରଦ ମୋର Calculation ପୁଣି ଭୁଲ୍ ହେବ ? impossible ମୋ ରିପର୍ଟ final. (ପ୍ରସ୍ଥାନ)

ଗନ୍ଧର୍ବ : ଆଜ୍ଞା ଡାକ୍ତର ବାବୁ ଫିଟ୍ କରିଦେଲେ ତ ?

ପୂର୍ଣ୍ଣ : ଛେନାଗୁଡ଼ କରିଦେଲେ । ତମକୁ ଯାହା ଲାଜ ନାହିଁ । ଆଉ ମୁଁ ବି ନିର୍ଲଜ । ଲମ୍ବୋଦର, ଲମ୍ବୋଦର ।

(ପଣ୍ଡିତେ ପ୍ରବେଶ)

ପଣ୍ଡିତେ : ଆଜ୍ଞା ଏକଦମ୍ ରାଜଯୋଟକ ।

ଗନ୍ଧର୍ବ+ପୂର୍ଣ୍ଣ: ରାଜ ଯୋଟକ ?

ପଣ୍ଡିତ : ହଁ ଶାସ୍ତ୍ର ଅନୁସାରେ ଯାଙ୍କ ରାଶିରେ ସର୍ବଦା ରାହୁ ସହିତ କେତୁଙ୍କର ଲଢ଼େଇ ଚାଲିଥାଏ । ଏହି ସୁଯୋଗରେ ବୃହସ୍ପତି ଯାଙ୍କୁ ସାହାଯ୍ୟ କରନ୍ତି । ଆଉ ଶନିମହାଗ୍ରହ ଯାଙ୍କୁ ରକ୍ଷା କରିବାକୁ ଶୂଳହସ୍ତେ ସଦା ଜାଗ୍ରତ । ତେଣୁ ଜ୍ୟୋତିଷ ଶାସ୍ତ୍ର ଜୋର୍ ଦେଇ କହୁଛି ଯେ - ଏ ମହାମାନବ ଏ ପୃଥିବୀରେ ବେଶ ଆନନ୍ଦରେ ପୁତ୍ର ପୌତ୍ରାଦି ସଂଗତରେ ବଞ୍ଚି ରହିବେ ।

ପୂର୍ଣ୍ଣ : ପଣ୍ଡିତେ, ପାଞ୍ଜିକୁ ଟିକିଏ ଭଲକରି ଓଲଟାନ୍ତୁ ।

ପଣ୍ଡିତେ : ଆଜ୍ଞା ଛତିଶ ବର୍ଷର ଅଭିଜ୍ଞତା କିଛି କମ୍ କି ?

ଗନ୍ଧର୍ବ : ତା' ହେଲେ ଶାସ୍ତ୍ର ମଙ୍ଗଳ ଲେଖୁଛି ?

ପଣ୍ଡିତେ : କିନ୍ତୁ ହେ ଭଦ୍ର । ପ୍ରତି ସପ୍ତାହରେ ଥରେ ଲେଖାଏଁ ଶହେପାଞ୍ଚ ବ୍ରାହ୍ମଣ, ଜ୍ୟୋତିଷ, ବାରିକ ଆଦି ପୁଣ୍ୟଜନମାନଙ୍କୁ ଅନ୍ନ-ବସ୍ତ୍ର ଆଦି ଦାନ କଲେ ସର୍ବାରିଷ୍ଟ ଖଣ୍ଡନ ହେବ ।

ଗନ୍ଧର୍ବ : ଶହେ ପାଞ୍ଚ ?

ପଣ୍ଡିତେ : ଓ ହୋ - ଶାସ୍ତ୍ର ସିନା ଲେଖିଛି ଶହେପାଞ୍ଚ । ଆମେ କ'ଣ ତୁଚ୍ଛାଟାରେ ବସିଛୁ ? ଇଚ୍ଛା କଲେ ପାଞ୍ଚରେ ବି ଚଳେଇ ଦବାନା -

ଗନ୍ଧର୍ବ : ଯେମିତି ହେଲେ ଚଳେଇ ଦେବେ ।

ପଣ୍ଡିତେ : ଏତଦ୍ଦ୍ୱାରା ଜ୍ୟୋତିଷ ଶାସ୍ତ୍ରର ନିର୍ଦ୍ଦେଶକୁ ତନ୍ନତନ୍ନ କରି ପରୀକ୍ଷା କରି ଏ ବିବାହରେ ସମ୍ମତି ପ୍ରଦାନ କଲି ।

ଇତିଶ୍ରୀ ଜ୍ୟୋତିଷ ବିଶାରଦ ପଣ୍ଡିତ ହରିହର ଗ୍ରହାଚାର୍ଯ୍ୟ ଖଡ଼ିରତ୍ନ ମହୋଦୟ – (ପ୍ରସ୍ଥାନ)

ଗନ୍ଧର୍ବ : (ପୂର୍ଣ୍ଣ ହତୋତ୍ସାହ ହୋଇ ଏଣେ ତେଣେ ଚାହୁଁଥାନ୍ତି । ଖୁସି ମନରେ) ତାହା ହେଲେ ମୁଁ ସିଲେକ୍ଟ ? (ଡାକ ଛାଡ଼ି) ଆରେ ହେ ଭଣ୍ଡାରି ପୁଅ – ପାଣି ଆଣ । ବାଜାବାଲା – ଢୋଲପିଟ (ବାଜା ବାଜେ) (ଦୌଡ଼ି ଆସେ ଟେଲର ଫିତା ନେଇ)

ଟେଲର : ମାଫ୍ କିଜିଏଗା – ମାଫ୍ କିଜିଏଗା ଜନାବ । ମେ ମର୍ଦ୍ଦନ ମୋବାଇଲ ଟେଲାରକା ଟେଲର ମାଷ୍ଟର ହୁଁ । ଆପକେ ଖିଜମତ କେ ଲିଏ ହାଜିର ହୋ ଗୟା । (ଫିତା ପକାଇ) ହଁ ଥୋଡ଼ାସା ଔର – ଔର – ହାଁ ଠିକ୍ ହେ – ଔର ଉପର

ଗନ୍ଧର୍ବ : ଓଃ ଜାମା ମାପ ନବ ? ନିଅ, ନିଅ – ଗୋଟେ କାହିଁକି ଯେତେ ପାରୁଛ ନିଅ । ହେ-ହେ ପକେଟଗୁଡ଼ା ଟିକେ ଲମ୍ବାଲମ୍ବା କରିବ ।

ଟେଲର : ମୁଝେ ମାଲୁମ ହେ –

ପୂର୍ଣ୍ଣ : (ରାଗରେ) ହୋଇହୋ ଟେଲର ଚାଲ ଏଠୁ ।

ଟେଲର : ମାଫ କିଜିଏ ସାବ । ମେ ଥୋଡ଼ା ଜଲ୍‌ଦି ମେ ହୁଁ । ଅଗର ଲଗନ ପର ଆପକା ଡ୍ରେସ ନା ହୋ ତୋ ସବ୍‌କୁଛ ଗଡ଼ବଡ଼ ହୋ ଯାଏଗା ।

ପୂର୍ଣ୍ଣ : ତୁମେ କରୁଛ କ'ଣ ?

ଟେଲର : ଦୁଲା କେ ଲିଏ ଡ୍ରେସ ବନାନା ହେ ତୋ ?

ପୂର୍ଣ୍ଣ : ଏ ଦୁଲା ନେହିଁ ? ଫିର୍ ?

ପୂର୍ଣ୍ଣ : ଦୁଲା କା ନୌକର ।

ଟେଲର : ନୌକର ? ତୋଓ୍ୱା, ତୋଓ୍ୱା - ଫିର୍ ଦୁଲା କାହାଁ ହେ -

ପୂର୍ଣ୍ଣ : ଅଭିତକ ଆୟା ନେହିଁ ।

ଟେଲର : ମାଫ୍ କିଜିଏଗା ଜନାବ । ମେ ମୂର୍ଖ ହୁଁ, ମେ ଅନାଡ଼ି ହୁଁ ।

(ପ୍ରସ୍ଥାନ)

ପୂର୍ଣ୍ଣ : ଗୋଟେ ଫାର୍ସ ଚାଲିଛି ।

ଗନ୍ଧର୍ବ : କ'ଣ ଆଜ୍ଞା ?

ପୂର୍ଣ୍ଣ : ଯାହା ହେଇଛି ଠିକ୍ ହେଇଛି । ଆପଣ I.A.S. ନୁହଁନ୍ତି ଯାଆନ୍ତୁ ବାହାରି ଯାଆନ୍ତୁ ।

ଗନ୍ଧର୍ବ : ମୁଁ ତ I.A. ତେଣୁ S କୁ ତା'ପରେ ଯୋଡକଥା ।(ରମୁ ପ୍ରବେଶ)

ପୂର୍ଣ୍ଣ ଆମର ଦରକାର I.A.S ତେଣୁ Sକୁ ଆଣ ତା'ପରେ ଯୋଡକଥା ।

ରମୁ : କ'ଣ ମାମୁଁ S ର ଅଭାବ ଅନୁଭବ କରୁଛନ୍ତି କି ?

ଗନ୍ଧର୍ବ : ମୁଁ I.A.

ରମୁ : ଆଉ 'S' ଟା ତ plural ଚିହ୍ନ ।

ଗନ୍ଧର୍ବ : Singular ସହିତ pluralର କ'ଣ ବାହାଘର କରି ହେବ ?

ସନିଆ : ଆସିଗଲା 'S' ଆସିଗଲା, ଭୟ ନାହିଁ ଭିଣେଇ 'S' ଆସିଗଲା ।

ଗନ୍ଧର୍ବ : ଏଁ ? କିଏବେ ?

ସନିଆ : ମୁଁ ବେ ମୋତେ ଚିହ୍ନି ପାରୁନୁ ? ମୁଁ ସନିଆ ଶନିଶ୍ଚର ତୋ ପ୍ରିୟ 'S'

ଗନ୍ଧର୍ବ : ବେ ସନିଆ, ତୁ ତୁ ଏସ୍ ?

ପୂର୍ଣ୍ଣ : 'S' ମାନେ ?

ସନିଆ : ଏଁ, ଏତେବଡ interview କରୁଛ, 'S' ମାନେ ଜାଣିନ, ମୁଁ 'S.S.'

ପୂର୍ଣ୍ଣ : S. ? S. ମାନେ ତ (ଚାହେଁ) ନା, ଏଟାତ ମଣିଷ, ପୁଣି S ହେଲା କେମିତି ? କି ହୋ ତମର ତ ଦି'ଟା ଗୋଡ଼ ତମେ S ହେବ କେମିତି ?

ସନିଆ : ତଥାପି ବୁଝିପାରୁନ ?

ପୂର୍ଣ୍ଣ : କାହିଁ ନା, ତ !

ସନିଆ : ଭିଣେଇ ବୁଝେଇ ଦେ ।

ଗନ୍ଧର୍ବ : ନେ ମୁଁ ନିଜେ ତ ବୁଝିପାରୁନି ବୁଝେଇବି କେମିତି ?

ସନିଆ : (ହସି) ଏଁ ? ତୁ ବି ବୁଝିନୁ ? ହରିବୋଲ ତୁ ମୋର କିଏ କହିଲୁ ?

ଗନ୍ଧର୍ବ : ତୋ ଭଉଣୀକୁ ଯେତେବେଳେ ବାହା ହେଇଛି ।

ସନିଆ : ତୁ ମୋ ଭିଣେଇ, ମୁଁ ତୋର କିଏ ?

ଗନ୍ଧର୍ବ : ତୁ ମୋର ସେଇଟା ।

ପୂର୍ଣ୍ଣ : କୋଉଟା ?

ସନିଆ : ସଳା, ସାଲା ମାନେ 'S'

ଗନ୍ଧର୍ବ : ହଉ ହେଲା ଯେ, ହେଲେ ତୁ ଏଠି ?

ସନିଆ : ତୁ କହିଥିଲୁ ବେ ସନିଆ ମୁଁ ଯାହାକୁ ବାହା ହେବି ତୁ ତାକୁ ପୋଷିବୁ । ତୁ ବାହା ହେବାକୁ ଆସିଗଲୁ ମୁଁ ପୋଷିବାକୁ ଆସିଛି ।

ଗନ୍ଧର୍ବ : ମୁଁ ବାହା ହେବାକୁ ଆସିଛି ବୋଲି ତୁ ଜାଣିଲୁ କେମିତି ?

ସନିଆ : ଅପା କହିଲା ?

ଗନ୍ଧର୍ବ : ଅପା ? (ପାଟି ଶୁଭିଲା) (ଚେଙ୍ଗବତୀ ଆସେ)

ଚେଂଗବତୀ: କୁଆଡ଼େ ଗଲା, କୁଆଡ଼େ ଗଲା ସେ ଅଣ୍ଡେଇଷା ଗନ୍ଧକର୍ପୂର ।

ସନିଆ : ଭିଣେଇ । ଅପା ଆସିଗଲା ହାତରେ କାଠ ଫାଳିଆ ।

ଗନ୍ଧର୍ବ : ଏଁ, କାଠଫାଳିଆ, ବେ ସନିଆ ଏବେ କ'ଣ କରିବା ?

ସନିଆ : ପିଠି ଫିଟେଇ ଦବ ପଳେଇ ଆ (ଦୁହେଁ ଉଠନ୍ତି, ଚେଙ୍ଗବତୀ ଆସେ)

ଚେଙ୍ଗ : କାହିଁଗଲା, କାହିଁଗଲା ସେ କାଠଖିଆ, ହଇରେ ଏ ଅଣ୍ଡେଇଷା ତୋର କ'ଣ ଟଙ୍କାଗୁଡ଼ା ଗଜଗଜ କରୁଛି, ଶେଷରେ ତା'ର ମରଦଗୁଡ଼ାକୁ କିଣି ନଉଛୁ ? ପରଘର ଭାଙ୍ଗି ବରବାଦ୍ କରୁଛୁ । ଖବରଦାର ମୁଁ ଚେଙ୍ଗବତୀ । ମୋ ମରଦକୁ ଯଦି କିଣିଛୁନା ତା'ହେଲେ ଏ କାଠଫାଳିଆ ତୋର ହାତ, ଗୋଡ଼ ଚୂନା କରିଦେବି ।

ପୂର୍ଣ୍ଣ : ନା ନା କଥା କଣକି ?

ଚେଙ୍ଗ : ଚୁପ୍, କହ ସତ କହ –

ପୂର୍ଣ୍ଣ : ହେ ମା' ଭୂଧାରଚଣ୍ଡୀ ହେ ମା' ଖପରା ଖାଇ ହେ ମା' କୀଚକେଶ୍ୱରୀ ମୁଁ ସତ କହୁଛି ।

ଚେଙ୍ଗ : ମୁଁ ଚେଙ୍ଗବତୀ ।

ପୂର୍ଣ୍ଣ : ହଁ ମା' ଚେଙ୍ଗବତୀ ମୁଁ ସତ କହୁଛି । ମୁଁ କିଛି ଜାଣେନି ।

ଚେଙ୍ଗ : ଚୁପ୍, ଦେଖୁଛୁ ନା ଏ କାଠଫାଳିଆ (ଦୌଡ଼ିଆସେ ସନିଆ)

ସନିଆ : ଅପା(କାଳି) ଅପାଲୋ ଏ ଅପା ।

ଚେଙ୍ଗ : କି ବେ ସନିଆ ତୁ ପୋଡ଼ାମୁହାଁ ।

ସନିଆ : ରହ ଅପା ରହ ମୋତେ ମାରନା । ତୋ ସଂସାର ଭାସିଗଲା ।

ଚେଙ୍ଗ : କ'ଣ ହେଲାରେ କାଠଖିଆ ।

ସନିଆ : ଭେଣେଇ ତୋ ଡରରେ ତତଲା ଡାଲି କଢ଼େଇକି ଡେଇଁ ପଡ଼ିଲା ।

ଚେଙ୍ଗ : ଏଁ ! ବେ ସେ ବଂଚିଛିନା ।

ସନିଆ : ମୁଁ କେମିତି ଜାଣିବି ଦେଖିବୁ ଆ ।(ଯାଆନ୍ତି)

ପୂର୍ଣ୍ଣ : ହେ ମା' କଟକଚଣ୍ଡୀ ! (ଯାଦବ ଆସନ୍ତି)

ଯାଦବ : ଅର୍ଦ୍ଧଚନ୍ଦ୍ର, ଏସବୁ କ'ଣ ଚାଲିଛି ?

ପୂର୍ଣ୍ଣ : ନା ନା ଏମିତି ମାନେ ।

ଯାଦବ : କ'ଣ ନା ନା ? ବର କାହିଁ ? I.A.S. ବର ।

ପୂର୍ଣ୍ଣ : I.A.S. (ରମ୍ମୁ ଆସେ)

ରମ୍ମୁ : କ'ଣ ହେଲା ମାମୁ, ପକେଟରେ ତ ଟଙ୍କା ଅଛି ଯାଆନ୍ତୁ । I.A.S. କିଣି ଆଣନ୍ତୁ ।

ଯାଦବ : ରମ୍ମୁ, ତୁ ଜାଣୁ, ମୋ ଇଜ୍ଜତ ତ ମାଟିରେ ମିଶିବାକୁ ବସିଲାଣି ।

| | | |
|---|---|---|
| ରମୁ | : | ଖାଲି ଆପଣଙ୍କର ନୁହେଁ । ଏ ଘରର ଇଜ୍ଜତ ମାଟିରେ ମିଶି ଲୋକହସା ହେବାର ଶେଷ ପାହାଚରେ ଆମେ ପାଦ ପକେଇ ସାରିଲୁଣି । |
| ଯାଦବ | : | ଆରେ ଏବେ କ'ଣ କରାଯିବ କହ, କିଛି ଗୋଟେ କର । |
| ପୂର୍ଣ୍ଣ | : | ମୁଁ ଭାବିଥିଲି ଯୌତୁକ ଲୋଭରେ । |
| ଯାଦବ | : | ତମେ ଚୁପ୍‌କର ଅର୍ଦ୍ଧଚନ୍ଦ୍ର । |
| ରମୁ | : | ମୁଁ ଜାଣିଥିଲି ଏମିତି ଅଘଟଣ ଘଟିବ ବୋଲି ତେଣୁ ମିତା ସହିତ ପରାମର୍ଶ କରି ମୋର ବଂଧୁ ଅଧ୍ୟାପକ ମନୋଜଙ୍କୁ ବିବାହ ପାଇଁ ରାଜି କରାଇ ସାଙ୍ଗରେ ନେଇ ଆସିଛି । |
| ଯାଦବ | : | ଏଁ ତୁ ସତ କହୁଛୁ ? |
| ପୂର୍ଣ୍ଣ | : | କାହାନ୍ତି କାହାନ୍ତି ତୋ ବଂଧୁ । |
| ଯାଦବ | : | ଆରେ ଯା, ତାଙ୍କୁ ଡାକିଆଣ, ଏ ବେଳରେ ଆଉ ମାନ ମାରନା । ଯା ବାପା ରମୁ । |
| ପୂର୍ଣ୍ଣ | : | ରମୁରେ ମୋ ବାପାଟା ପରା ତାକୁ ଡାକ । |
| ରମୁ | : | ଆସନ୍ତୁ (ଯାଏ) |
| ଯାଦବ | : | ଅର୍ଦ୍ଧଚନ୍ଦ୍ର, ଭଲ ଫାର୍ସଟେ କଲ ହେ । |
| ପୂର୍ଣ୍ଣ | : | ମୋତେ କ୍ଷମା କରିଦିଅନ୍ତୁ ଭାଇନା । |
| ଯାଦବ | : | ବନ୍ଦ କର ଏ ପ୍ରହସନ । |
| | | (ରମୁ ମନଜକୁ ନେଇ ଆସନ୍ତି । |

ରମୁ : ଇଏ ମନୋଜ କୁମାର ଦାସ । ଅଧ୍ୟାପକ ।

ମନୋଜ : ଆଜ୍ଞା ନମସ୍କାର, ମୋର କିନ୍ତୁ ଗୋଟିଏ condition ଅଛି ।

ସମସ୍ତେ : କ'ଣ ?

ମନୋଜ : ମୁଁ ମିତାକୁ ବାହା ହେବି, ହେଲେ ଆପଣଙ୍କ ପ୍ରଦତ୍ତ ଯୌତୁକରୁ କିଛି ହେଲେ ନେବିନି । ଏଥିରେ ଯଦି ରାଜି ମୁଁ ଆପଣଙ୍କ ପ୍ରସ୍ତାବରେ ଏକ ମତ ।

ପୂର୍ଣ୍ଣ : 'ଏଥିରେ ଆଉ ରାଜି ଅରାଜିର ପ୍ରଶ୍ନ ଉଠୁଛି କାହିଁ ଆମେ ସମସ୍ତେ ରାଜି ନା କ'ଣ ?

ଯାଦବ : ଅର୍ଦ୍ଧଚନ୍ଦ୍ର ।

ପୂର୍ଣ୍ଣ : ମୁଁ ମାନିଲି ।

ଯାଦବ : ଆରେ ଲମ୍ବୋଦର, ପଣ୍ଡିତେଙ୍କୁ ଡାକରେ ପଥବରଣ କରନ୍ତୁ । ବାଜାବାଲାଙ୍କୁ କହ ଢୋଲ ବଜାଉ । ଆସରେ ବରଙ୍କୁ ପାଛୋଟି ନିଅ ।

(ଲମ୍ବୋଦର ଦୌଡ଼ି ଆସେ ଗୋଟେ ସଙ୍ଗୀତର ତାଳେ ତାଳେ ନାଚି ନାଚି ଭିତରକୁ ଯାଆନ୍ତି ।)

– ଅନ୍ଧାର –

## ଏଥିରେ ଥିବା ଚରିତ୍ରମାନେ

- ସୁଲତା
- ପୁପୁନ
- ପର୍ଶୁ
- ପୃଥ୍ୱୀରାଜ
- ପଦିଆ
- ପ୍ରଫୁଲ୍ଲ
- ପ୍ରଶାନ୍ତ
- ଅକଲ
- ପ୍ରସନ୍ନ
- ଜୟଚନ୍ଦ୍ର
- ପତିତ

# ପ୍ରଥମ ଦୃଶ୍ୟ

ଇନସ୍ୟୁରାନ୍ସ ଅଫିସର ପ୍ରସନ୍ନ ମହାନ୍ତିଙ୍କ Drawing Room. ଆଧୁନିକ ଆସବାବପତ୍ରରେ ସୁସଜ୍ଜିତ, ସମୟ ସନ୍ଧ୍ୟା ।

ଆଲୋକ ଆସିଲା ବେଳକୁ ଦେଖାଯାଏ ତାଙ୍କର ଏକମାତ୍ର ପୁତ୍ର ପୁପୁନ୍ ବହିଖାତା ଖୋଲି ତା'ର ଟିଉସନ୍ ସାର୍‌ଙ୍କୁ ଅପେକ୍ଷା କରିଛି । ଏହି ଅପେକ୍ଷା ଭିତରେ ସେ ଉଠିପଡ଼ି କେତେବେଳେ ବୋଲିଂ ଭଙ୍ଗୀ ତ କେତେବେଳେ ବ୍ୟାଟିଂ action ପ୍ରଦର୍ଶନ କରୁଥାଏ । ଭିତରୁ ତା' ମମି ସୁଲତା ଡାକନ୍ତି –

ସୁଲତା : ପୁପୁନ୍ – ପୁପୁନ୍ !

ପୁପୁନ୍ : (ସୁନାପିଲାଙ୍କ ଭଳି) Yes Mum.

ସୁଲତା : (ମୋବାଇଲ୍ କାନରେ ଦେଇ ଆସନ୍ତି) କ'ଣ ଚାଲିଛି ?

ପୁପୁନ୍ : ପାଠ ଚାଲିଛି ।

ସୁଲତା : କେତେ ବାଟ ଗଲା ?

ପୁପୁନ୍ : ଏଇ ସାହିତ୍ୟରୁ ସାଇନ୍ସ ବାଟ ଦେଇ ଇଂରାଜୀ ପାଖରେ ପହଞ୍ଚି ଗଲାଣି ଆଉ କିଛିସମୟ ପରେ ଅଙ୍କରେ ପାଦ ପକେଇବା ।

ସୁଲତା : ସାବାସ୍ ମେରେ ବେଟା ।(ଫୋନ ଲାଗିଯାଏ ଚୁପ୍ ରହିବାକୁ ଇସାରା ଦେଇ) ହଁ Hallow, ......ହଁ....ହଁ ସୁ ଲଗାଅସୁ ।...... ବୁଝି ପାରୁନ ? ମୋର ନାମ ସୁଲତା ତମେ ସୁଦ୍ଧୁ ଲତା ଲତା ଡାକୁଛ ଅଫିସ୍‌ରେ ଅନ୍ୟମାନେ ଶୁଣିଲେ ଖରାପ ଭାବିବେନି... ହଉ ହେଲା, ଶୁଣ, ତମେତ ଜାଣ ଆଜି ସୋମବାର ମୋର ଉପାସ ପୁରି, ପରଟା ଖାଇ ଖାଇ ବିରକ୍ତ ଲାଗିଲାଣି... ଆସିଲା ବେଳେ ଭେଜ୍ ବିରିୟାନୀ ଆଣିବ ତ,...

ପୁପୁନ୍ : ମାମି ମାମି, କୁହ ମୋପାଇଁ ନନ୍‌ଭେଜ୍ ।

ସୁଲତା : ହଁ, ପୁପୁନ୍ କହୁଚି ତା'ପାଇଁ ନନ୍‌ଭେଜ୍ ଆଣିବ ।

ସୁଲତା : ...ହଁ ସାଙ୍ଗରେ କିଛି ସିଙ୍ଗାଡ଼ା ଆଣିଥିବ... କ'ଣ କହିଲ ଉପାସ ? ଆଉ ମୁଁ କୋଉ ମାଛ ମାଉଁସ ଆଣିବାକୁ କହୁଛି ଯେ ! ଆଜି ପରା ସୋମବାର ମୁଁ ପିଆଜରସୁଣ ତ ଛୁଏଁନି । ହାଲୋ ହାଲୋ । ଏ ଫୋନ୍ ସବୁବେଳେ କଥା ମଝିରେ କଟିଯାଏ ।

ପୁପୁନ୍ : ନାଇଁ ମାମି କଟିଯିବ କାହିଁକି Dady ବୋର୍ ହୋଇ କାଟି ଦେଇଛନ୍ତି ।

ସୁଲତା : Dady କାଟି ଦେଇଛନ୍ତି ତୁ ଜାଣିଲୁ କେମିତି ?

ପୁପୁନ୍ : Dady ସେଦିନ କହୁଥିଲେ -

ସୁଲତା : ଏଁ ! ଏତେ ସାହସ, ମୋ ଫୋନ୍‌କୁ ପୁଣି କାଟି ଦଉଛନ୍ତି, ଜାଣି ନାହାନ୍ତି ମୁଁ କାହା ଝିଅ ?

ପୁପୁନ୍ : ଆଉ, ଆଡ଼ଭୋକେଟ୍ ଜୟଚନ୍ଦ୍ର ମହାନ୍ତି ଝିଅଟି - (ପର୍ଶୁ ଆସେ ହାତରେ ବେଗ୍ ଧରି)

ପର୍ଶୁ : ଏ କୁକୁରଗୁଡ଼ାଙ୍କ ଜାଳାରେ ମଣିଷ ବାଟଘାଟ ଚାଲି ପାରିବନି -

ସୁଲତା : କ'ଣ ହେଲାକି ପର୍ଶୁ ।

ପର୍ଶୁ : ଏ କୁକୁର, କୁକୁରଙ୍କୁ ଡରନ୍ତିନି ଯେ ତାଙ୍କ କାମୁଡ଼ାକୁ ମୋର ପ୍ରାଣେ ଭୟ, କାମୁଡ଼ାକୁ ଡରନ୍ତିନି ଯେ. ତା'ପାଇଁ ଯୋଉ ଇଞ୍ଜେକ୍‌ସନ୍, ଇଞ୍ଜେକ୍‌ସନ୍ ତ ନୁହେଁ ଇନ୍ଦ୍ର କଷଣ । ସିଧାସଳଖ ନାହି ମୂଳକୁ । ଛାଡ଼ ମା' ଏଇ ନିଅ । ଏଟା ଦୋଷା, ଏଥିରେ ବିରିବରା, ଆଳୁଚପ୍, ଏ ପେକେଟ୍‌ରେ ଗୁପ୍‌ଚୁପ୍, ଗୁପ୍‌ଚୁପ୍ ଦର ବଢ଼ିଗଲା ମା' ଟଙ୍କାରେ ଗୋଟେ ।

ସୁଲତା : କ'ଣ ହେଲା, ଟଙ୍କାରେ ଗୋଟେ ?

ପର୍ଶୁ : ଆଉ କହିଲାରୁ କହୁଛି, ପେଟ୍ରୋଲ୍ ଲିଟର ସତୁରୀ ଟଙ୍କା ହେଲାଣି, ଗୁପ୍‌ଚୁପ୍ ଗୋଟାକୁ ଟଙ୍କେ କ'ଣ କହୁଛୁ, ଦି'ଟଙ୍କା ହବ ।

ସୁଲତା : ହଉ ହଉ । (ନେଲେ,

ପୁପୁନ୍ : ମାମି ।

ସୁଲତା : ଉଁ ହୁଁ ଅଙ୍କ ସରିବ ଗୁପ୍‌ଚୁପ୍ ଖୋଲାଯିବ ।

ପୁପୁନ୍ : ହଉ ହେଲା, ଇଂଲିଶ ଥାଉ ଅଂକଟା ସାରି ଦଉଛି ।

ସୁଲତା : ଅଂକ ସରିବ ମୋତେ ଦେଖେଇବୁ ତା' ପରେ ଏ ଜରି ଖୋଲିବ - (ଯାଏ)

ପୁପୁନ୍ : ଏଇ ସଂଗେ ସଂଗେ ।

ପର୍ଶୁ : ପୁପୁନ୍ ବାବୁ ଆଜି ପରା ସୋମବାର ।

ପୁପୁନ୍ : ସେଇଥିପାଇଁ ତ ଗୁପ୍‌ଚୁପ୍ ଆସିଲା ।

ପର୍ଶୁ : ଆଉଜଣେ ବି ଆସିବାର କଥା ।

ପୁପୁନ୍ : କିଏ ?

ପର୍ଶୁ : ଆଜି ଅଂକ ସାର୍‌ଙ୍କ ପାଳି ତ ।

ପୁପୁନ୍ : ଏ ମା' ହଁ ତ, ସାର୍ ମୋତେ ଅଂକ ଦେଇଥିଲେ ।
(ତରତରରେ ବହି ଖୋଲେ)
(ପର୍ଶୁ ପର୍ଶୁ ଡାକି ଡାକି ଆସନ୍ତି ପୃଥ୍ୱୀରାଜ)

ପୃଥ୍ୱୀରାଜ : ପର୍ଶୁ ପର୍ଶୁ !

ପର୍ଶୁ : ଆଜ୍ଞା ।

ପୃଥ୍ୱୀରାଜ : ପୃଥ୍ୱୀରାଜ କିଏ ? ମୁଁ ପଚାରୁଛି ପୃଥ୍ୱୀରାଜ କିଏ ?

ପର୍ଶୁ : ଆଜ୍ଞା ପୃଥ୍ୱୀରାଜ ତ ଜଣେ, ଏବେ କିନ୍ତୁ ଢ଼େର ଢ଼େର ପୃଥ୍ୱୀରାଜ ବାହାରିଲେଣି ।

ପୃଥ୍ୱୀରାଜ : କ'ଣ ହେଲା, ମୋ ଛଡ଼ା ଆଉ ପୃଥ୍ୱୀରାଜ ଏ ପୃଥିବୀରେ ଅଛନ୍ତି ।

ପର୍ଶୁ : ହଁ ପରା ଆଜି ମୁଁ ଗୋଟେ ନୂଆ ପୃଥ୍ୱୀରାଜକୁ ଦେଖିଲି ।

ପୃଥ୍ୱୀରାଜ : କୋଉଁଠି ?

ପର୍ଶୁ : ଏଇ ଆମ ଟି.ଭି.ରେ,

ପୃଥ୍ୱୀରାଜ : ଟି.ଭି.ରେ ପୃଥ୍ୱୀରାଜ ?

ପର୍ଶୁ : ହଁ, ସେଇ ଯୋଉ ଝିଅଟା ମ ଦିନକୁ ପଚାଶ କି ଶହେଥର ସାବୁନ୍ ଲଗେଇ ଗାଧୋଉଛି ।

ପୃଥ୍ୱୀରାଜ : ସେହି ଝିଅ ନାଁ ପୃଥ୍ୱୀରାଜ ?

ପର୍ଶୁ : ନା, ତା' ନାଁ କାଳେ କରିନା କପୁର, ତା' ବାପ ଗୋଟେ କି କପୁର, ତା' ବାପ ରାଜକପୁର ତା' ବାପ ନା ହଉଛି ପୃଥ୍ୱୀରାଜ କପୁର । ଏଇଟା ହଉଛି ନୂଆ ପୃଥ୍ୱୀରାଜ, ମୁଁ ବହୁତ କଷ୍ଟରେ ସେ ସେଲୁନ୍‌ବାଲାଠୁ ଯା ଠିକଣା ପାଇଛି ।

ପୃଥ୍ୱୀରାଜ : ତୁ ପୃଥ୍ୱୀରାଜ ଠିକଣା କାହିଁକି ଖୋଜୁଥିଲୁ ?

ପର୍ଶୁ : କ'ଣ ଆଉ କରିବି, ଆପଣ ମୋତେ ସବୁବେଳେ ପଚାରୁଛନ୍ତି ପୃଥ୍ୱୀରାଜ କିଏ, ପୃଥ୍ୱୀରାଜ କିଏ ? ମୁଁ ପ୍ରତିଥର କହୁଛି ପୃଥ୍ୱୀରାଜ ମୋ ମାଲିକ ମୋତେ ଦରମା ଦିଅନ୍ତି । ଏଇ କଥା କେତେଥର କହିବି, ତେଣୁ ନୂଆ ପୃଥ୍ୱୀରାଜ ଖୋଜୁଥିଲି ଯା'ହଉ ପାଇଗଲି ।

ପୃଥ୍ୱୀରାଜ : ମୁଁ ଆଡ୍‌ଭୋକେଟ୍ ପୃଥ୍ୱୀରାଜ ମହାନ୍ତି କେତେ ଲୋକଙ୍କୁ ଜେଲ୍ ଦେଇଛି କେତେ ଲୋକଙ୍କୁ ଫାଶୀରେ ଚଢ଼େଇଛନ୍ତି, ଅଥଚ ମୋ ଚଷମା ?

ପର୍ଶୁ : ଚଷମା ?

ପୃଥ୍ୱୀରାଜ : ହଁ, ମୁଁ ଦୁନିଆଯାକ ଖୋଜି ସାରିଲିଣି ମୋ ଚଷମା ପାଉନି, ମୋ ଚଷମା କୋଉଠି ଅଛି, Where is my ଚଷମା ? ମୁଁ ଏବେ ଥାନାକୁ ଯାଉଛି F.I.R. ଦେବି ।

ପୁପୁନ୍ : ଜେଜେ ଥାନାକୁ ଯାଅନି ପୁଲିସ୍‌ବାଲା ତମକୁ ଜେଲ୍ ଦେଇଦେବେ ।

ପୃଥ୍ୱୀରାଜ : What ?

ପୁପୁନ୍ : ତମ ମୁଣ୍ଡକୁ ଦେଖ ।

ପର୍ଶୁ : ହଁ ବାବୁ, ମୁଣ୍ଡରେ ତ ଚଷମା ।

ପୃଥ୍ୱୀରାଜ : ଏଁ, Sorry Sorry । ପର୍ଶୁ ! ହସୁଛୁ କ'ଣ, ତୁ ତ ଜାଣୁ ମୁଁ ବିନା ଚଷମାରେ ଦେଖିପାରେନା, ଚଷମା ତ ମୋ ମୁଣ୍ଡରେ ଲାଗିଛି ମୁଁ ଦେଖିବି କେମିତି, ତୁ ତ ଦେଖିବା କଥା ।

ପର୍ଶୁ : ମୁଁ ଆଜ୍ଞା ଆପଣଙ୍କ ଦାନା ଖାଉଛି ଆପଣଙ୍କ ମୁଣ୍ଡକୁ ଚାହିଁ ପାରିବିନା ?

ପୃଥ୍ୱୀରାଜ : ଠିକ୍‌ଅଛି, ଯା ମୋ ଟର୍ଚ୍ଚଟା ଆଣ ।

ପର୍ଶୁ : ଅଜ୍ଞା - (ଯାଏ

ପୃଥ୍ୱୀରାଜ : କିରେ ପୁପୁନ୍ କ'ଣ ପଢୁଛୁ ?

ପୁପୁନ୍ : ଜେଜେ ମୁଁ ଅଂକ କରୁଛି ଯେ ହେଲେ ଏ ଅଂକଟା ଟିକିଏ ଆସୁନି ।

ପୃଥ୍ୱୀରାଜ : No No, ଅଂକରେ Weak ହେବା ଉଚିତ୍ ନୁହେଁ, ଅଂକରେ Weak ହେଲେ Brain Weak ହବ । Brain Weak ହେଲେ Mind Weak ହବ । Mind Weak ହେଲେ heart weak ହବ । heart weak ହେଲେ Body weak ହେବ । ତେଣୁ ଅଂକରେ Strength ବଢ଼ାଇବା ଉଚିତ । ଅଂକରେ Strong ହେବାକୁ ହେଲେ ପ୍ରଶ୍ନ ପଢ଼ିବାକୁ ପଡ଼ିବ, ପଢ଼ - ପ୍ରଶ୍ନ ପଢ଼ ।

ପୁପୁନ୍ : ଗୋଟିଏ ମାଙ୍କଡ଼ ଗୋଟିଏ ନଡ଼ିଆଗଛକୁ ଥରକେ ସାତଫୁଟ୍ ଚଢ଼େ ଏବଂ ତିନିଫୁଟ୍ ଖସି ପଡ଼େ । ଏମିତି ଆଠଥରରେ ସେ ନଡ଼ିଆଗଛର ଆଗରେ ପହଞ୍ଚିଲା, ତେବେ ନଡ଼ିଆଗଛର ଉଚ୍ଚତା କେତେ ? (ପର୍ଶୁ ଟର୍ଚ୍ଚ ନେଇ ଆସେ)

ପୃଥ୍ୱୀରାଜ : ବାସ୍ - ତୁ ଏମିତି ପ୍ରଶ୍ନଟାକୁ ବାରମ୍ବାର ପଢ଼ ଆଉ ଚିନ୍ତାକର, ଚେଷ୍ଟା ବି କର, ମୁଁ ଟିକିଏ ବାଥରୁମ୍‌ରୁ ଆସେ ।(ପଢ଼େ) ଏମିତି କ'ଣ ପଢୁଛୁ, ବଡ଼ ପାଟିରେ ପଢ଼, ବାଥରୁମ୍‌କୁ ଯେମିତି ଶୁଣାଯିବ,

ଆଉ ମୁଁ ବାଥ୍‌ରୁମ୍‌ରୁ ଫେରିଲା ବେଳକୁ ତୋର ଯେମିତି ପ୍ରଶ୍ନଟା ମୁଖସ୍ଥ ହୋଇଯାଇ ଥିବ । (ଯାଆନ୍ତି)

ପୁପୁନ୍ : ପର୍ଶୁ ଅଂକଲ... ?

ପର୍ଶୁ : ତମେ ତାଙ୍କୁ କାହିଁକି କହୁଥିଲ ଯେ, ରାତି ପାହିଥିଲେ ମୋତେ କହିଥାନ୍ତ, ମୁଁ ଆମ କୂଅ ଦଉଡ଼ିଟା ନେଇ ନଡ଼ିଆଗଛର ଅଗକୁ ଚଢ଼ି ଯାଇ ଥା'ନ୍ତି ଆଉ ମାପି ଆଣି ଥାଆନ୍ତି । ଏବେ ତାଙ୍କୁ କହିଲ, ସିଏ ଆଉ ଛାଡ଼ିବେ ନା ?

ପୃଥ୍ୱୀରାଜ : (ଭିତରୁ ଡାକନ୍ତି) କିରେ ପୁପୁନ୍ ?

ପର୍ଶୁ : ଏଇ, ହେଇଟି ବାବୁ ମାମି କହୁଥିଲେ ଗୁପ୍‌ଚୁପ୍‌ଗୁଡ଼ା ଥଣ୍ଡା ହୋଇଯିବ ତମେ ଏମିତି ଏଟାକୁ ପଢ଼ି ପଢ଼ି ଚାଲିଯାଅ । ଗୁପ୍‌ଚୁପ୍ ଗଣ୍ଡେ ଖାଇଦେଇ ଜେଜେ ଆସିବା ଆଗରୁ ଚାଲି ଆସିବ ।

ପୁପୁନ୍ : ହଁ, ବଢ଼ିଆ ହବ – (ପଢ଼ି ପଢ଼ି ଯାଏ)

ପର୍ଶୁ : ଟି.ଭି.ଟା ସଜାଡ଼ି ଦିଏ । ଏବେ ବାବୁ ଆସିବେ ପାଟିକରି (ବାହାରୁ କ୍ଷୀରବାଲା ଡାକେ)

ପଦିଆ କ୍ଷୀରବାଲା : ପର୍ଶୁ ଭାଇ ହୋ ପର୍ଶୁ ଭାଇ ।

ପର୍ଶୁ : ଆ ଆ ଭିତରେ କେହି ନାହାନ୍ତି ପଶିଆ । (କ୍ଷୀରବାଲା ଆସେ)

ପଦିଆ : କି ରେ ପର୍ଶୁଭାଇ ଆଜି କ୍ଷୀର ନବନି କି ?

ପର୍ଶୁ : ମାନେ ? ତୋତେ କ୍ଷୀର ନବନାହିଁ ବୋଲି କିଏ କହିଲା କି ?

ପଦିଆ : କାହିଁ, ଏଠି ତ ପନ୍ଦରମିନିଟ୍ ହବ ମୁଁ ବାହାରେ ଛିଡ଼ା ହୋଇଛି ଡାକ ଛାଡୁଛି ତମର କେହି ଶୁଣୁନ ।

ପର୍ଶୁ : ଡାକୁଥିଲୁ କି ? ମୋତେ ଶୁଭିନି ।

ପଦିଆ : ଶୁଭିବ କେମିତି, ତମ ଘରେ ଖାଲି ନଡ଼ିଆଗଛକୁ ମାଙ୍କଡ଼ ଉଠୁଛି ଆଉ ଖସୁଛି ଉଠୁଛି ଆଉ ଖସୁଛି ।

ପର୍ଶୁ : ହଁ ଆମଘରେ ହନୁମାନ ବିଜେ କରିଛନ୍ତି ।

ପଦିଆ : ହନୁମାନ ? ହୋଇଥିବ । (କ୍ଷୀର ଦଉ ଦଉ)

ପର୍ଶୁ : କିରେ ଆଜି କ'ଣ କ୍ଷୀର ଏତେ ପତଳା ?

ପଦିଆ : କ'ଣ କରିବୁ କହ, ଖରାଦିନ ତ ଗାଈଗୁଡ଼ାଙ୍କୁ ଭାରି ଶୋଷ । ପିଉ ପିଉ ବେଶିଗୁଡ଼ାଏ ପିଇ ଦଉଛନ୍ତି । ହେଲେ କ୍ଷୀର ସିନା ପତଳା ନ ହେଲେ ଚିଜ ଏକଦମ୍ ଏକନମ୍ବର । (ଦଉ ଦଉ କ୍ଷୀର, ପୁନୁନ୍‌ର ଅଂକ ଶୁଣାଯାଏ)

– ଅନ୍ଧାର –

# ଦ୍ୱିତୀୟଦୃଶ୍ୟ

(ଆଲୋକ ଆସିଲା ବେଳକୁ ଦେଖାଯାଏ,
ପୃଥ୍ୱୀରାଜ ପୁପୁନ୍‌କୁ ଅଂକ ପଢ଼ଉଥା'ନ୍ତି)

ପୃଥ୍ୱୀରାଜ : ହୁଁ, ମାଙ୍କଡ଼ ଥରକେ କେତେଫୁଟ୍ ଚଢୁଛି ?

ପୁପୁନ : ସାତଫୁଟ୍ ।

ପୃଥ୍ୱୀରାଜ : ସାତଫୁଟ୍, ଖସୁଛି କେତେ ଫୁଟ୍ ?

ପୁପୁନ : ତିନିଫୁଟ୍ ।

ପୃଥ୍ୱୀରାଜ : ଉଠୁଛି ସାତଫୁଟ୍ ଖସୁଛି ତିନିଫୁଟ୍ ଆଉ ରହୁଛି କେତେ ଫୁଟ୍ ?

ପୁପୁନ : ଚାରିଫୁଟ୍ ।

ପୃଥ୍ୱୀରାଜ : ଥରକରେ ଯଦି ଚାରିଫୁଟ୍ ରହେ ଆଠଥରରେ ?

ପୁପୁନ୍ : ଥରକେ ଚାରିଫୁଟ୍ ରହିଲେ ।

ପୃଥ୍ୱୀରାଜ : ଆଠ ଥରରେ ଆଠ ଚରେକୁ ବତିଶ ତା' ମାନେ । ନଡ଼ିଆଗଛର ଉଚ୍ଚତା ବତିଶ ଫୁଟ୍ । (ହସି) ବାସ୍ ହେଇଗଲା, କଲମ ଧରିବାକୁ ପଡ଼ିଲାନି, ମୁହେଁ ମୁହେଁ,.. (ଇସି) answer ହୁଁ ପୃଥ୍ୱୀରାଜ ମହାନ୍ତିଟି... ଗଣିତ ପ୍ରଶ୍ନ ମିଳିବା ଆଗରୁ ମୁଁ ଅଂକ ସାରିଥାଏ ।

ପୁପୁନ୍ : କିନ୍ତୁ answer ଦେଇଛି ୩୫ଫୁଟ୍ ।

ପୃଥ୍ୱୀରାଜ : What ? ୩୫ଫୁଟ୍ ? କେମିତି ହେବ ୩୫ଫୁଟ୍ ? ଆଠ ଚାରେ ତ ବତିଶ, ୩୫ କେମିତି ହେବ ? ଏଇଥିପାଇଁ ଖାସ୍ ଏଇଥିପାଇଁ ।

ଏ ପାଠ ଉପରୁ ପିଲାଙ୍କର faith ଉଠିଗଲାଣି । No, ଏମିତି ଛାଡ଼ିଦେଲେ ହବନି । ମୁଁ ଏ ବହି ଉପରେ କେଶ୍ କରିବି - ପର୍ଶୁ ପର୍ଶୁ ।

ପର୍ଶୁ : (ପର୍ଶୁ ପହଞ୍ଚେ) ଆଜ୍ଞା

ପୃଥ୍ୱୀରାଜ : ପର୍ଶୁ ଆ ମୋ ସାଙ୍ଗରେ ।

ପର୍ଶୁ : କୁଆଡ଼କୁ ଆଜ୍ଞା ?

ପୃଥ୍ୱୀରାଜ : ନଡ଼ିଆଗଛ ମୂଳକୁ

ପର୍ଶୁ : କାହିଁକି ହଜୁର ?

ପୃଥ୍ୱୀରାଜ : ନଡ଼ିଆଗଛକୁ ଚଢ଼ିବୁ, ଥରକେ ସାତଫୁଟ୍ ଚଢ଼ିବୁ ପୁଣି ତିନିଫୁଟ୍ ଖସି ଆସିବୁ, ବାସ୍ ଏମିତି ଆଠଥରରେ ଗଛ ଅଗରେ ପହଞ୍ଚିବୁ ତା'ପରେ ଆମେ ଫିତା ପକେଇ ମାପିଦବା' ବାସ୍ । ଏଇଠି ପ୍ରମାଣ ଦେଇଯିବ ବହି ଠିକ୍ କି ମୁଁ ଠିକ୍ ?

ପର୍ଶୁ : ଆଜ୍ଞା, ଅଂଧାରରେ ମୁଁ ଚଢ଼ି ପାରିବିନି ।

ପୃଥ୍ୱୀରାଜ : ପୁପୁନ୍ ଧର ଟର୍ଚ୍ଚ - ଚାଲ ସିଏ ଲାଇଟ୍ ଦେଖେଇବ ତୁ ଚଢ଼ିବୁ । ତା'ପରେ ମାପିଦେଇ ଆମେ କୋର୍ଟରେ ପ୍ରମାଣ କରିଦବା ଗଛର ଉଚ୍ଚତା ବତିଶ ଫୁଟ୍ - (ଏହି ସମୟରେ କଲିଂବେଲ୍ ବାଜେ) କିଏ ?

ପର୍ଶୁ : ଦେଖିଦିଏ ।

ପୃଥ୍ୱୀରାଜ : ଶୁଣ, ମହକିଲ ହେଇଥିଲେ ଦାଣ୍ଡରେ ବସେଇବୁ । ଆଉ କେହି ହୋଇଥିଲେ, ଭିତରକୁ ଆଣିବୁ ମୋତେ ଡାକିବୁ ମୁଁ ଭିତରେ ଅଛି ।

ପର୍ଶୁ : ଆଜ୍ଞା - (ଯାଏ)

ପୃଥ୍ୱୀରାଜ : ଆ ପୁପୁନ୍ ଏ ଘରକୁ (ଯାଆନ୍ତି - ଆସନ୍ତି ସାମ୍ବାଦିକ ଓ କେମେରା ମେନ୍)

ପ୍ରଶାନ୍ତ : ଏଇଟା ପୃଥ୍ୱୀରାଜ ମହାନ୍ତିଙ୍କ ଘର ?

ପର୍ଶୁ : ନାଇଁ ଆଜ୍ଞା ଆଡ୍‌ଭୋକେଟ୍ ପୃଥ୍ୱୀରାଜ ମହାନ୍ତିଙ୍କ ଘର ।

ପ୍ରଶାନ୍ତ : ହେଲା ହେଲା, (ପର୍ଶୁ ଭିତରକୁ ଯାଏ) (କେମେରା ମେନ୍‌ଙ୍କୁ) ମୁଁ କହୁ ନଥିଲି ଏଇଟା ଆଡ୍‌ଭୋକେଟ ପୃଥ୍ୱୀରାଜ ମହାନ୍ତିଙ୍କ ଘର ତୁ ଯେତେଟା ପାରୁଛୁ ଭିଜୁଆଲ୍‌ଗୁଡ଼ା ନେଇଯା ।

ପ୍ରଫୁଲ୍ଲ : ଭିଜୁଆଲ ନେବି ଯେ ଅସଲ ଚିଜ କାହିଁ ?

ପ୍ରଶାନ୍ତ : ଅସଲ ଚିଜ କ'ଣ ?

ପ୍ରଫୁଲ୍ଲ : ଖବର

ପ୍ରଶାନ୍ତ : ଖବର କ'ଣ ଏମିତି ସୋଫାରେ ଶୋଇଛିନ୍ତା ?

ପ୍ରଫୁଲ୍ଲ : ଆଉ ?

ପ୍ରଶାନ୍ତ : ଖବର ପରା ଗଛରେ ଚଢ଼ିଛି, ସାତଫୁଟ୍ ଉଠୁଛି, ତିନିଫୁଟ୍ ଖସୁଛି - (ପୃଥ୍ୱୀରାଜ ଆସନ୍ତି)

ପୃଥ୍ୱୀରାଜ : କ'ଣ ହେଇଛି ? ଆପଣମାନେ ?

ପ୍ରଶାନ୍ତ : ଆଜ୍ଞା ନମସ୍କାର, ମୁଁ ପ୍ରଶାନ୍ତ ପାଟଶାଣୀ From ଆଶ୍ଚର୍ଯ୍ୟ T.V. with Camera Man.

ପ୍ରଫୁଲ୍ଲ : ପ୍ରଫୁଲ୍ଲ ଫଟୋବାଲା ।

ପୃଥ୍ୱୀରାଜ : ଆଶ୍ଚର୍ଯ୍ୟ ଟି.ଭି. ? ଏ ଚିଠି କ'ଣ ପାଇଁ ?

ପ୍ରଶାନ୍ତ : ଆଶ୍ଚର୍ଯ୍ୟ ହେଉଥିବେ ନିଶ୍ଚୟ, ଏଠି ଆପଣଙ୍କ ଘରେ ଗୋଟେ ଅଲୌକିକ ଘଟଣା ଘଟିଛି ।

ପୃଥ୍ୱୀରାଜ : ଅଲୌକିକ ଘଟଣା ? ପୁଣି ପୃଥ୍ୱୀରାଜ ମହାନ୍ତି ଘରେ ? ଅସମ୍ଭବ ।

ପ୍ରଶାନ୍ତ : ସେହି ଅସମ୍ଭବଟା ସମ୍ଭବ ହେବାକୁ ତ ଅଲୌକିକ ଘଟଣା କହନ୍ତି ।

ପୃଥ୍ୱୀରାଜ : ହେଲା, ଆପଣ କେମିତି ଜାଣିଲେ ?

ପ୍ରଶାନ୍ତ : ଆମେ ପରା ସାମ୍ବାଦିକ, ଖଳ ଲୋକଙ୍କ ଭାଷାରେ ଆମେ ଶାଗୁଣାଙ୍କ ଉତ୍ତର ପୁରୁଷ ମଢ଼ କୋଉଠି ଅଛି ଆମେ ଶୁଙ୍ଘିକରି ଜାଣିନବୁ ।

ପୃଥ୍ୱୀରାଜ : ହଉ କ'ଣ ଜାଣିଛନ୍ତି ଆପଣମାନେ ?

ପ୍ରଶାନ୍ତ : ଆପଣଙ୍କ ନଡ଼ିଆଗଛକୁ ଗୋଟିଏ ମାଙ୍କଡ଼ ଥରକେ ସାତଫୁଟ୍ ଉଠି ତିନିଫୁଟ୍ ଖସି ପଡୁଛି । ହଁ କି ନା ?

ପୃଥ୍ୱୀରାଜ : (ହସି) ଓ ଆଚ୍ଛା ଆଚ୍ଛା ।

ପ୍ରଫୁଲ୍ଲ : ଏହା କ'ଣ ଏକ ଅଲୌକିକ ଘଟଣା ନୁହେଁ ।

ପୃଥ୍ୱୀରାଜ : ଆଚ୍ଛା ଆପଣମାନେ କହିଲେ ଗୋଟିଏ ମାଙ୍କଡ଼ ଥରକେ ସାତଫୁଟ୍ ଉଠୁଛି ପୁଣି ତିନିଫୁଟ୍ ଖସୁଛି - ରହୁଛି କେତେ ?

ପ୍ରଶାନ୍ତ : ଚାରିଫୁଟ୍ ।

ପୃଥ୍ୱୀରାଜ : ଆଠଥରରେ ?

ପ୍ରଫୁଲ୍ଲ : ଆଠ ଚୌ କି ବତିଶ୍ ଫୁଟ୍ ।

ପୃଥ୍ୱୀରାଜ : ବତିଶ ଫୁଟ୍ ନା ?

ପ୍ରଶାନ୍ତ : ଏଥିରେ ସନ୍ଦେହ ରହିଲା କୋଉଠି ?

ପୃଥ୍ୱୀରାଜ : ଆପଣ ଏଟାକୁ ଟି.ଭି.ରେ ଦିଅନ୍ତୁ ମୁଁ ଯା ଉପରେ କେଶ୍ କରିବି ।

ପ୍ରଫୁଲ୍ଲ : ଆଜ୍ଞା, ଏଗୁଡ଼ାର ଟିକିଏ ଫଟୋ ନେଉଛି –

ପୃଥ୍ୱୀରାଜ : ହଁ ତମେ ଫଟୋ ନଉଥାଅ ମୁଁ ଆସୁଛି ।

ପ୍ରଶାନ୍ତ : ଅନ୍ୟମାନେ ନିଉଜ୍ ଦେବାକୁ ବଡ଼ କଂଜୁସି କରନ୍ତି କିନ୍ତୁ ଯେ ଭଦ୍ରଲୋକ ଖୋଲାହାତ ଖୋଲା ମନ ଆଉ ଖୋଲା ହୃଦୟରେ ନିଉଜ୍ ଦଉଛନ୍ତି । (ପଶି ଆସନ୍ତି ଅକଲ ଗୁଡୁମ୍)

ଅକଲ : ଅକଲ ଗୁଡୁମ୍ ଦାସ from ଭାଣ୍ଡିଆ T.V.

(ହାତ ମିଳାନ୍ତି)

ପ୍ରଶାନ୍ତ : ଡେରି କରିଦେଲ ଅକଲ ଗୁଡୁମ୍

ଅକଲ : ସେଇଥିପାଇଁ ତ ମୋର ନାମ ଅକଲଗୁଡୁମ୍ ଦାସ କାରଣ ସମସ୍ତଙ୍କର ଅକଲକୁ ଗୁଡୁମ୍ କରିକରି ମୁଁ ଅକଲ ଗୁଡୁମ୍ ।

ପ୍ରଫୁଲ୍ଲ : ଆଜି କିନ୍ତୁ ଆମେ ତମ ଅକଲକୁ ଗୁଡୁମ୍ କରିଦେଲୁ ।

ଅକଲ : ତମେ ସବୁ ଭାବିଛ ନିଉଜ୍‌ତକ ସବୁ ହଡ଼ପ୍ କରିଦେଲଣି ମୁଁ ଖାଲି ହାତରେ ଫେରିବି । ହେଲେ ବାପଧନ ତମେ ମୋର ନିଉଜ୍ ହଡ଼ପ୍ କଲ ତାହା କ'ଣ ତମ ଚେନେଲରେ ଚାଲିବ ?

ପ୍ରଶାନ୍ତ : କାହିଁକି ଆମର ଆଶ୍ଚର୍ଯ୍ୟ ଟି.ଭି. ।

ଅକଲ : ଆଶ୍ଚର୍ଯ୍ୟ ଟି.ଭି.ରେ ଆଶ୍ଚର୍ଯ୍ୟଜନକ ନିଉଜ୍ ଚାଲେ ସତ ହେଲେ ଏ ନିଉଜ୍‌ରେ ଆଶ୍ଚର୍ଯ୍ୟ କ'ଣ ? ମାଙ୍କଡ଼ କ'ଣ ଗଛକୁ ଉଠେନି ନା ଗଛରୁ ଖସେନି । ଏଥିରେ ଚମତ୍କାରିତା ଅଛି ଯାହାକୁ ଭାଣ୍ଡିଆ ଟି.ଭି. ଦେଖାଏ । ତେଣୁ ନିଉଜ୍‌ଗୁଡ଼ା ମୋତେ ଦେଇଦିଅ ମୁଁ ଭାଣ୍ଡିଆ ଟି.ଭି.କୁ ପଠାଇ ଦିଏ ।

ପ୍ରଫୁଲ୍ଲ : କ'ଣ ବିନା ମୂଲ୍ୟରେ ?

ଅକଲ : ହଁ ନ ହେଲେ ଶହେଟଙ୍କା ନବ ।

ପ୍ରଶାନ୍ତ : ହଇଓ ଅକଲ ଗୁଡୁମ୍ ଏ ନିଉଜ୍‌ଗୁଡ଼ା ପୋଇଶାଗ ନା ପାଣିକଖାରୁ, ଦଶହଜାର ଟଙ୍କା ପକାଅ ନିଉଜ୍ ନିଅ ।

ଅକଲ : ଦୁଇଶରେ ଦବ କି ?

ପ୍ରଶାନ୍ତ : ପାଞ୍ଚହଜାରରେ ପାରିବ ?

ଅକଲ : ତିନିଶରେ ଦବନା ପଳେଇବି ।

ପ୍ରଶାନ୍ତ : ଶେଷ କଥା ହଜାରେ ।

ଅକଲ : ମୋର ବି ଶେଷକଥା ପାଁଶହ ।

ପ୍ରଶାନ୍ତ : ହଉ ଦିଅ ।

ଅକଲ : ଏହା ତ ସେ ହାତ । (ଦିଆନିଆ ହୁଏ) ଧନ୍ୟବାଦ - ସେମାନେ ଯାଆନ୍ତି, ଅକଲ ଫୋନ୍ କରେ)

ଅକଲ : Hallow ନବକୃଷ୍ଣ । ମୁଁ ଅକଲପୁରରୁ ଆକଲଗୁଡୁମ୍ ଦାସ କହୁଛନ୍ତି... । ଗୋଟେ୍ ଚମତ୍କାର ରିପୋର୍ଟ ଅଛି... ଭିଜୁଆଲ୍ ? .... ପଛରେ ପଠାଇବି । ଏବେ ଅନ୍‌ଲାଇନ୍‌ର report କହିବି । ଠିକ୍‌ଅଛି... ଲାଇନ୍ ଦିଅ ମୁଁ report ଉପରେ ଅଛି ।

କଳିଯୁଗକୁ ଅକସ୍ମାତ୍ ଦଳିମକଚି ତ୍ରେତୟାର ଅଚାନକ ଆବିର୍ଭାବରେ ବିଶ୍ୱବାସୀ ଯେତିକି ଆଶ୍ୱସ୍ତ ସେତିକି ଆତଙ୍କିତ ହୋଇ ପଡ଼ିଛନ୍ତି, ଆଶ୍ଚର୍ଯ୍ୟ ହେଲେ ବି ସତ୍ୟ ହୋଇଛି ଅକଲପୁରର ବିଶିଷ୍ଟ ଆଡ଼ଭୋକେଟ୍ ପୃଥ୍ୱୀରାଜ ମହାନ୍ତି ସୁପୁତ୍ର ପ୍ରସନ୍ନ ମହାନ୍ତିଙ୍କ ପବିତ୍ର ପବିତ୍ର ନାରୀକେଳ ବୃକ୍ଷରେ । ଯେଉଁ ବୃକ୍ଷ ଦେହରେ ଅଲୌକିକ ଲୀଳା ପ୍ରଦର୍ଶନ କରୁଅଛି ଏକ ଦୈବିକ ମର୍କଟ ।

ଅବିରତ ଭାବରେ ଉଠ୍‌ବସ୍ ହୋଇ ରାମନାମ ଜପ କରୁଥିବା ଏହି ଦୈବଶକ୍ତିସଂପନ୍ନ ମର୍କଟ ଦେହରୁ ପୁଞ୍ଜା ପୁଞ୍ଜା ଜ୍ୟୋତିରାଶି ନିର୍ଗତ ହେଉଅଛି । ହନୁମାନଙ୍କ ଅବତାର କୁହାଯାଉଥିବା ଏହି ମର୍କଟ ମହାତ୍ମାଙ୍କ ଛାତିରେ ରାମ, ସୀତା ଓ ଲକ୍ଷ୍ମଣଙ୍କ ପ୍ରତିମୂର୍ତ୍ତି ବିଦ୍ୟମାନ । ଯାହାକୁ ଦର୍ଶନ କରିବା ପାଇଁ ଲକ୍ଷ ଲକ୍ଷ ଭକ୍ତ ଖୋଳ, କରତାଳି ଧରି ଶୋଭାଯାତ୍ରାରେ ବାହାରି ପଡ଼ିଲେଣି । ଯାହାଙ୍କୁ ସ୍ୱାଗତ କରିବା ପାଇଁ ସହରର ପ୍ରତିଟି ମନ୍ଦିରକୁ ଆଲୋକମାଳାରେ ସୁସଜ୍ଜିତ କରାଗଲାଣି, କୁହାଯାଉଛି ହନୁମାନଙ୍କ ଅବତାରର ସ୍ମରଣରେ ପ୍ରତିଟି ମନ୍ଦିରରେ ଜ୍ୟେଷ୍ଠପୁତ୍ରଙ୍କ ଶୁଭମନାସି ପ୍ରଦୀପମାନ ଦାନ କରାଗଲାଣି । ଭାଣ୍ଡିଆ T.V. ପ୍ରଥମେ ଏହାକୁ ଆପଣଙ୍କ ସମ୍ମୁଖକୁ ଆଣିଥିବାରୁ ଆମେ କୃତଜ୍ଞ । ଅକଲପୁରରୁ ଅକଲ ଗୁଡୁମ୍ ଦାସ from ହାଣ୍ଡିଆ T.V. (ବାହାରୁ ଆସନ୍ତି ପ୍ରସନ୍ନ)

ପ୍ରସନ୍ନ : ଆପଣ ? କ'ଣ ହେଉଛି ?

ଅକଲ : ସାର୍ congratualtion ଆପଣ ଭାଗ୍ୟବାନ ବହୁତ ଭାଗ୍ୟବାନ ।

ପ୍ରସନ୍ନ : କ'ଣ ପାଇଁ ?

ଅକଲ : ସ୍ୱୟଂ ବଜରଂ ବଲୀ ରାମଦୂତ ହନୁମାନ ଆପଣଙ୍କ ନାରୀକେଳ ବୃକ୍ଷରେ ଆବିର୍ଭୁତ ହୋଇଛନ୍ତି ଇଏ କ'ଣ କମ୍ କଥା ? ଡାକି ଡାକି ଭକ୍ତର କଣ୍ଠ ଶୁଖିଗଲେ, ଛାତି ପାଟିଗଲେ ଯିଏ ଆଡ଼ଆଖିରେ ଚାହାନ୍ତିନି । ସିଏ ସ୍ୱୟଂ ବିନା ନିମନ୍ତ୍ରଣରେ ଆପଣଙ୍କ ନାରୀକେଳ ବୃକ୍ଷରେ ଲୀଳା ପ୍ରଦର୍ଶନ କରୁଛନ୍ତି ବା ଏ କ'ଣ କମ୍ କଥା ?

ପ୍ରସନ୍ନ : ଆପଣ ଭାଂଗ ଖାଆନ୍ତି ନା ଗଂଜେଇ ଟାଣନ୍ତି ।

ଅକଲ : ଏ ଦି'ଟା ଯାକ ମୁଁ ଛୁଏଁନି ।

ପ୍ରସନ୍ନ : ତା'ହେଲେ ଆପଣଙ୍କ ପରିଚୟଟା ।

| | | |
|---|---|---|
| ଅକଲ | : | ମୁଁ ଅକଲଗୁଡୁମ୍ ଦାସ from ଭାଣ୍ଡିଆ T.V. |
| ପ୍ରସନ୍ନ | : | ଓ ଭାଣ୍ଡିଆ T.V. ? ଯାଆନ୍ତୁ ପର୍ଣ୍ଣୁ ପର୍ଣ୍ଣୁ । |
| ଅକଲ | : | ଏ ସବୁ ସମ୍ବେଦନଶୀଳ ସଂବାଦ ତେଣୁ ପଳେଇବାରେ ଭଲପାଏ । |
| | | (ସୁଲତା ଆସେ) |
| ସୁଲତା | : | ପର୍ଣ୍ଣୁ ନାହିଁ ? |
| ପ୍ରସନ୍ନ | : | କୁଆଡ଼େ ଗଲା ? |
| ସୁଲତା | : | ବାପାଙ୍କ ସହିତ ନଡ଼ିଆଗଛ ମାପୁଛୁ । |
| ପ୍ରସନ୍ନ | : | ହଉ କ'ଣ ହେଇଛି ? |
| ସୁଲତା | : | (ଭାବି) କ'ଣ ହେଇଛି ପରଟା, ଆଳୁଭଜା କରିଛି । |
| ପ୍ରସନ୍ନ | : | ଛେନାଗୁଡ଼ |
| ସୁଲତା | : | ତମେ ତ ଗଲାବେଳେ କହିଯାଇଥିଲ ପରଟା ଆଳୁଭଜା କରିବାକୁ ଆଉ ଛେନାଗୁଡ଼ କେମିତି କରଥା'ନ୍ତି ତା'ଛଡ଼ା ଗୁଡ଼ ସିନା ଅଛି ଛେନା ତ ନାହିଁ । |
| ପ୍ରସନ୍ନ | : | ଓ ହ ଆମ ନଡ଼ିଆଗଛରେ କ'ଣ ହେଇଛି ? |
| ସୁଲତା | : | ନଡ଼ିଆଗଛରେ ? ପର୍ଣ୍ଣୁ ପର୍ଣ୍ଣୁ । (ପର୍ଣ୍ଣୁ ଆସେ) |
| ପର୍ଣ୍ଣୁ | : | କ'ଣ ହେଲା ମାଆ ? |
| ପ୍ରସନ୍ନ | : | ନଡ଼ିଆଗଛରେ କ'ଣ ହେଇଛି ? |
| ପର୍ଣ୍ଣୁ | : | ନଡ଼ିଆଗଛରେ... ? ହଁ ଗୋଟେ ଗୁଡ଼ି ଲାଗିଛି । |
| ପ୍ରସନ୍ନ | : | ଚୁପ୍ ? ଗୋଟେ ମାଙ୍କଡ଼ ଆମ ନଡ଼ିଆଗଛକୁ ଚଢୁଛି କି ନା ? |

ପର୍ଶୁ : ମାଙ୍କଡ଼ ?

ପ୍ରସନ୍ନ : ହଁ, ଥରକେ ସାତଫୁଟ୍ ଚଢୁଛି ପୁଣି ତିନିଫୁଟ୍ ଖସୁଛି ।

ପର୍ଶୁ : ସାତଫୁଟ୍ ଚଢୁଛି ତିନିଫୁଟ୍ ଖସି ପଡୁଛି ।

ପ୍ରସନ୍ନ : ହଁ, ଏଇ ପରା ଟି.ଭି.ବାଲା ଆସିକି କ'ଣ ଫଟୋ ଉଠେଇ ନେଇ ଗଲେଣି ।

ପର୍ଶୁ : ଓ ଟି.ଭି.(ହସିଲେ)

ସୁଲତା : ଟି.ଭି. ବାଲା ଆସିଥିଲେ ମୋତେ ଡାକିଲନି ।

ପ୍ରସନ୍ନ : କି ରେ ଏମିତି ହସୁଛୁ କ'ଣ ?

ପର୍ଶୁ : ଆଜ୍ଞା ଏ କଥାରେ କାନ୍ଦିବା କଥା, ଏକଦମ୍ ରଡ଼ି ଛାଡ଼ିକି କାନ୍ଦିବା କଥା, ହେଲେ ମୋତେ କାନ୍ଦ ମାଡୁନି, ସେଇଲାଗି ହସୁଛି ।

ପ୍ରସନ୍ନ : ପର୍ଶୁ ।

ସୁଲତା : ଆମ ଗଛକୁ କାହିଁକି ମାଙ୍କଡ଼ ଚଢ଼ିବ ? ପୁପୁନ୍ ଅଂକବହିରେ ନଡ଼ିଆଗଛକୁ ମାଙ୍କଡ଼ ଚଢୁଛି ଭିତରକୁ ଆସ ଦେଖିବ । (ଉଭୟେ ଯାଆନ୍ତି)

(ଆସନ୍ତି ଜୟଚନ୍ଦ୍ର)

ଜୟଚନ୍ଦ୍ର : ପର୍ଶୁ !

ପର୍ଶୁ : ଜୁହାର ହଜୁର ।

ଜୟଚନ୍ଦ୍ର : କ'ଣ କିରେ, ଭିତରେ ଭିତରେ ହନୁମାନଙ୍କୁ ହରଣ କରିଆଣିଲ ?

ପର୍ଶୁ : ଇଏ କି କଥା ହଜୁର ?

ଜୟଚନ୍ଦ୍ର : ତୁ ତ ଜାଣୁ ମୁଁ କଥା କହିବାରେ ଭାରି କଂଜୁସ୍ । ଚାରି ଆଖିରେ ଦେଖେ, ସାତକାନରେ ଶୁଣେ ତା'ପରେ ଯାଇ ଗୋଟିଏ ତୁଣ୍ଡରେ କହେ ।

ପର୍ଶୁ : ଆଜ୍ଞା, ଆପଣଙ୍କର ଯୋଉ ତୁଣ୍ଡ ସେ ତୁଣ୍ଡର କଥାକୁ ହଜମ କରିବା ପାଇଁ ମୋ ମୁଣ୍ଡରେ ମସଲା କାହିଁ ? ବଡ଼ବାବୁଙ୍କୁ ଡାକି ଦେଉଛି ।

ଜୟଚନ୍ଦ୍ର : କ'ଣ ସମୁଦୀ ଲୁଚିଛନ୍ତି କି ? (ପୃଥ୍ୱୀରାଜ ଅଛନ୍ତି)

ପୃଥ୍ୱୀରାଜ : ସମୁଦୀକୁ ଦେଖି ସମୁଦୀ ଆମର ଲୁଚି ଯାଆନ୍ତି କି ?

ଜୟଚନ୍ଦ୍ର : ଆରେ ସମୁଦୀ !

ପୃଥ୍ୱୀରାଜ : ନମସ୍କାର ନମସ୍କାର ।

ଜୟଚନ୍ଦ୍ର : ନମସ୍କାର କ'ଣ କହୁଛନ୍ତି ସମୁଦୀ congratulation.

ପୃଥ୍ୱୀରାଜ : କାହିଁକି, ସମୁଦୀ କ'ଣ ନିଜେ ହାରିଯାଇ ପୃଥ୍ୱୀରାଜକୁ ଜିତାଇ ଦେଲେ ?

ଜୟଚନ୍ଦ୍ର : (ହସି) ଆଡ଼ଭୋକେଟ୍ ଜୟଚନ୍ଦ୍ର ଦାସ ଏତେ ସହଜରେ ହାରିଯିବ ନା ପୁଣି ପୃଥ୍ୱୀରାଜଠୁ, ମହମ୍ମଦ ଘୋରୀକୁ ନେଇ ଆସିବ ପଛେ ହାରିବନି - ହେଲେ....

ପୃଥ୍ୱୀରାଜ : ଆରେ ସାରା ଜୀବନ ପାଇଁ ସେହିଦିନ ତ ହାରିଯାଇଛ ଯେଉଁଦିନ ତମ ଝିଅକୁ ମୋ ପୁଅ ହାତକୁ ଟେକି ଦେଇଛ, ଆଉ କ'ଣ ଏ ଜନ୍ମରେ ଜିତି ପାରିବ ?

ଜୟଚନ୍ଦ୍ର : ଆରେ ମୋ ଝିଅକୁ ବୋହୂକରି ତମେ ଧନ୍ୟ ହେଇଯାଇଛ, କେବଳ ତା'ରି ଯୋଗୁଁ ଆଜି ଆପଣଙ୍କ ନଡ଼ିଆଗଛରେ ମହାପ୍ରଭୁ ହନୁମାନ ବିଜେ କରିଛନ୍ତି ।

ପୃଥ୍ୱୀରାଜ : କ'ଣ କହିଲ ?

ଜୟଚନ୍ଦ୍ର : ତମେ ଲୁଚେଇଲେ କ'ଣ କଥା ଲୁଚିବ ? ହଉ ଲୁଚାଅ, ତମେ ଧନସଂପତ୍ତି ପାଇଲେ ମୁଁ କ'ଣ ଖୁସି ହେବିନି, ହେଲେ ମୋତେ ଦୁଃଖ ଲାଗୁଛି ମୁଁ ଏ କଥାଟା ବାହାରୁ ଶୁଣିଲି ମୋତେ ପର ଭାବି ଲୁଚେଇ ଦେଲେ ।

ପୃଥ୍ୱୀରାଜ : ସମୁଦୀ (ପର୍ଶୁ ଫୋନ୍ ଧରି ଆସେ)

ପର୍ଶୁ : ଆଜ୍ଞା ଫୋନ୍

ପୃଥ୍ୱୀରାଜ : Hallow..... କିଏ ସମାଜ ଅଫିସ୍‌ରୁ ?.... କ'ଣ କହିଲେ ? ଆମ ନଡ଼ିଆଗଛରେ ମାଙ୍କଡ଼ ଡେଇଁଛି ନା ନା ମିଛ - (କାଟି ଦିଅନ୍ତି)

ଜୟଚନ୍ଦ୍ର : କ'ଣ ମିଛ ? (ପୁଣି ଫୋନ୍)

ପୃଥ୍ୱୀରାଜ : ହଁ, ମୁଁ ପୃଥ୍ୱୀରାଜ ମହାନ୍ତି କହୁଛି...କିଏ ? ବଜରଂ ଦଳ ସେକ୍ରେଟାରୀ.... କ'ଣ କହିଲେ ହନୁମାନଙ୍କୁ ଆମ୍ଭେ ଘରେ ବାନ୍ଧି ପକେଇଛୁ ? ବଡ଼ ଆଶ୍ଚର୍ଯ୍ୟ କଥା । ଆପଣ ଭୁଲ୍ କହୁଛନ୍ତି ।(କାବା)

ଜୟଚନ୍ଦ୍ର : ବଜାର ହାଟ କୋର୍ଟକଚେରି ଚାରିଆଡ଼େ ହୁଲ୍‌ସ୍ଥୁଲ ହୋଇଗଲାଣି । ଆଉ ଆପଣ କହୁଛନ୍ତି ମିଛ ? (ପୁଣି ଫୋନ୍)

ପୃଥ୍ୱୀରାଜ : କିଏ ? ପ୍ରଜାତନ୍ତ୍ର ? (କାଟି ଦିଅନ୍ତି) ସଂବାଦ ? (କାଟନ୍ତି), O.T.V.(କାଟନ୍ତି) ଏମିତି ଥକି ଯାଆନ୍ତି ।

ପୃଥ୍ୱୀରାଜ : (ଥକିଯାଇ) ପର୍ଶୁ ପର୍ଶୁ । ନା ଆଉ ପାରିହବନି । (ଭିତରକୁ ଯାଆନ୍ତି)

ଜୟଚନ୍ଦ୍ର : ନା, ପୂରା ମିଛ ତ ହବନି, କିଛି ନା କିଛି ସତ ଅଛି : ନ ହେଲେ.... (ସୁଲତା ଆରେ)

ସୁଲତା : ବାପା; ତମେ ଏଠି ଏକୁଟିଆ ଭିତରକୁ ଆସ ।

ଜୟଚନ୍ଦ୍ର : ହଁ ଭିତରକୁ ଯିବି ଯେ ! ହେଲେ ମାଆ ଗୋଟେ କଥା ପଚାରିବି ସତ କହିବୁନା ?

ସୁଲତା : ମଲା, ତମକୁ ସତ କହିବିନି ତ କହିବି କାହାକୁ ?

ଜୟଚନ୍ଦ୍ର : କଥାରେ ଅଛି ବାହା ହେଲା ଝିଅ ପଡ଼ିଶାପଣକୁ ସରି ।

ସୁଲତା : ନା ବାପା କୁହ ।

ଜୟଚନ୍ଦ୍ର : ପଚାରନ୍ତିନି, ତୁ ତ ଜାଣୁ ତୋ ବାହାଘର ଲୋନ୍ ମୁଁ ଏ ଯାଏଁ ସୁଝି ପାରିନି । ଘରଟା ତ ବିକି ଦେଲି ଘର ଖଣ୍ଡେ କରିପାରୁନି, ଘରଭଡ଼ା ବାକି ।

ସୁଲତା : କ'ଣ କିଛି ଟଙ୍କା ଦରକାର ?

ଜୟଚନ୍ଦ୍ର : ମାଗନ୍ତିନି, ତୋ ଘରେ ତ ପ୍ରଭୁ ହନୁମାନ ବିଜେ କଲେଣି । ତୋ ଘର ଏବେ ଧନରତ୍ନରେ ପୂରି ଉଠିବ । ମୋତେ ଯଦି

ସୁଲତା : ବାପା ଏଗୁଡ଼ା ସବୁ ମିଛ ।

ଜୟଚନ୍ଦ୍ର : ମିଛ ? ମୋ ଦିହ ଛୁଇଁଲୁ (ପୃଥ୍ୱୀରାଜ ଆସନ୍ତି)

ପୃଥ୍ୱୀରାଜ : ଆଁ ହାଁ ଥାଉ ଥାଉ ତୋ ବାପର ଦିହ ଛୁଉଁନା ।

ଜୟଚନ୍ଦ୍ର : ସମୁଦୀ

ପୃଥ୍ୱୀରାଜ : ଭିତରକୁ ଆସ, ସବୁକଥା ଜାଣିବ ।

ଜୟଚନ୍ଦ୍ର : ହଁ ହଁ ଏଛଡ଼ା ସବୁ ସିକ୍ରେଟ୍ କଥା, ଭିତରେ ହବା ଉଚିତ - ଚାଲ ।

ପୃଥ୍ୱୀରାଜ : ଏ ପର୍ଶୁ । କବାଟ ବନ୍ଦକର ।

ପର୍ଶୁ : ଆଜ୍ଞା - ଯାଏ - ଅନ୍ୟମାନେ ଭିତରକୁ ଯାଆନ୍ତି ।

(ପଶିଆସେ ପୁଲିସ୍)

ପତିତ : କ'ଣ କହିଲୁ ? କ'ଣ କହିଲୁ ତୋ ନାମ ପର୍ଶୁ ?

ପର୍ଶୁ : ହଁ, ମୋ ବାପମା ମୋତେ ନାଁ ଦେଇଥିଲେ ପର୍ଶୁରାମ ହେଲେ ସମସ୍ତେ ଡାକନ୍ତି ପର୍ଶୁ ।

ପତିତ : ମୋ ନାଁ କ'ଣ ଜାଣୁ ?

ପର୍ଶୁ : ନା,

ପତିତ : ମୋ ନାଁ ପତିତପାବନ ପଣ୍ଡା ।

ପର୍ଶୁ : ଆଜ୍ଞା ପତିତପାବନ ଝଣ୍ଡା ତ ପୁରୀରେ ।

ପତିତ : ବେ ଚୁପ୍ ! ଝଣ୍ଡା ନୁହେଁ ପଣ୍ଡା । ହେଲେ ଚୋରତସ୍କରମାନେ ମୋତେ ପତିତ ସୁଦ୍ଧୁ ପତିତ ପଣ୍ଡା ବୋଲି ଡାକନ୍ତି ।

ପର୍ଶୁ : ମୁଁ ଆଜ୍ଞା ଚୋର ନୁହେଁ କି ତସ୍କର ନୁହେଁ ।

ପତିତ : ଏଠି କେତେ ବର୍ଷ ହେଲା ଚାକିରି କଲୁଣି ?

ପର୍ଶୁ : ଗଣିନି ଆଜ୍ଞା ।

ପତିତ : ଗଣ୍ ଗଣିକି କହ । (ପ୍ରସନ୍ନ ଆସନ୍ତି)

ପ୍ରସନ୍ନ : ପୁଲିସ୍ ।

ପତିତ : ଚୁପ୍ ରୁହନ୍ତୁ, ଆପଣଙ୍କୁ କିଛି ନ ପଚାରିଲା ପର୍ଯ୍ୟନ୍ତ ପ୍ଲିଜ୍ କିଛି କହନ୍ତୁ ନାହିଁ ।

ପ୍ରସନ୍ନ : ହେଲେ

ପତିତ : ପ୍ଲିଜ୍ ହଁ ବାପା ପର୍ଶୁରାମ । ତୁ ହନୁମାନ ପଇସା ଦେଖିଛୁ ?

ପର୍ଶୁ : ସ୍ୱୟଂ ହନୁମାନଙ୍କୁ ତ ଏଯାଏଁ ଦେଖିନି, ଆଉ ତାଙ୍କ ପଇସା ଦେଖିବି କୋଉଠୁ ?

ପତିତ : ତମ ନଡ଼ିଆଗଛରେ ହନୁମାନ କେତେବେଳେ ବିଜେ କଲେ ?

ପର୍ଶୁ : ଏ ପର୍ଯ୍ୟନ୍ତ ବିଜେ କରି ନାହାନ୍ତି ।

ପତିତ : ଶୁଣ୍, ମୋ ନାମ ପତିତପାବନ ପଣ୍ଡା, କି ପଣ୍ଡା ?

ପର୍ଶୁ : ପତିତ ପାବନ ।

ପତିତ : କିନ୍ତୁ ବଛାବଛା ଦାଗୀ ଚୋରମାନେ ମୋତେ କ'ଣ ବୋଲି ଡାକନ୍ତି ।

ପର୍ଶୁ : ପତିତ ପଣ୍ଡା ।

ପତିତ : ବାସ୍, ପତିତ ପଣ୍ଡା ଯେତେଭଲ ସେତେ ଖରାପ, ବୁଝିଲୁ ?

ପର୍ଶୁ : ଶୁଣନ୍ତୁ ହଜୁର, ମୁଁ ହେଲି ଚାକରବାକର ଲୋକ ମୋତେ ସେ ଅବୁଝା କଥାଗୁଡ଼ା କାହିଁକି ବୁଝାଉଛନ୍ତି କହିଲେ ?

ପ୍ରସନ୍ନ : ଦେଖନ୍ତୁ, ଇନିସ୍‌ପେକ୍ଟର ଆପଣ ଘଟଣାର ସତ୍ୟାସତ୍ୟ ନିଜେ ଫିଲ୍ଡରେ ଦେଖନ୍ତୁ, ତା'ପରେ ଯାହା ଏକ୍‌ସନ୍ ନେବେ ନିଅନ୍ତୁ ।

ପତିତ : ଆଜ୍ଞା ମୁଁ ଜାଣେ ଆପଣ ଜଣେ ଭଦ୍ରଲୋକ । ବୃଥାଟାରେ ଆମକୁ କାହିଁକି ଗୋଲକଧନ୍ଦାରେ ପକଉଛନ୍ତି କହିଲେ ? ସତଟା କହିଦଉ ନାହାନ୍ତି ?

ପ୍ରସନ୍ନ : ସତ କ'ଣ ?

ପତିତ : ଆପଣ କୌଣସି ତାନ୍ତ୍ରିକର ତନ୍ତ୍ର ବଳରେ ହନୁମାନଙ୍କୁ ବନ୍ଧନ କରି ନଡ଼ିଆଗଛରେ ଉଠ୍‌ବସ୍ କରଉ ନାହାନ୍ତି ?

ପ୍ରସନ୍ନ : ମିଛ କଥା ।

ପତିତ : ଏବଂ ତାଙ୍କ ଉପରେ ଅତ୍ୟାଚାର କରି ହନୁମାନ ପଇସା ଅସୁଲ କରିବା ମତଲବରେ ନାହାନ୍ତି ?

ପ୍ରସନ୍ନ : ଆପଣ ନିଜେ ନଡ଼ିଆଗଛକୁ ଦେଖୁ ନାହାନ୍ତି ।

ପତିତ : ଦେଖିବି ତ ନିଶ୍ଚୟ, କିନ୍ତୁ ତନ୍ତ୍ର ବଳରେ ଯଦି ଆପଣ ଆଉ କିଛି କରନ୍ତି, ମାନେ ହନୁମାନଙ୍କୁ ଅଦୃଶ୍ୟ ଆଦି ଘଟଣା ଘଟାନ୍ତି ।

ପ୍ରସନ୍ନ : ଇନିସ୍‌ପେକ୍ଟର ସାର୍, ଆପଣ ଆସିଲେ ଆମ ଘର, ବାହାର, ବଗିଚା ସବୁ ଦେଖନ୍ତୁ ତା'ପରେ ଆପଣ ଯାହା ବିଚାର କରିବେ ।

ପତିତ : ଠିକ୍ ଅଛି ଚାଲନ୍ତୁ, (ଯାଆନ୍ତି)

ପର୍ଶୁ : ସେ ପ୍ରଭୋ ପବନସୁତ ମୁଁ କି ଦୋଷ କରିଥିଲି ।(ପୁପୁନ୍ ଆସେ)

ପୁପୁନ୍ : ପର୍ଶୁ ଅଙ୍କଲ ପର୍ଶୁ ଅଂକଲ : ତମକୁ ପୁଲିସ୍ ପିଟିଲେ ।

ପର୍ଶୁ : ପିଟି ନାହାନ୍ତି କି ମାରି ନାହାନ୍ତି ହେଲେ ମୋ ଦିହରେ ଜୀବନ କୋଉଠି ଅଛି ଖୋଜିଲେ ମିଳୁନି ।

ପୁପୁନ : ପୁଲିସ୍ କାହିଁକି ଆସିଲେ ?

ପର୍ଶୁ : ହେଇଟି ପୁପୁନ ବାବୁ । ତମକୁ କୋଉ ମାଷ୍ଟର ସେ ଅଂକ କରିବାକୁ କହିଥିଲା ?

ପୁପୁନ୍ : ବହିରେ ତ ଅଂକ ଅଛି, ହେଲେ ଅଂକ କରୁକରୁ ଏମିତି କେମିତି ହେଲା ?

ପର୍ଣ୍ଣ : ଚୁପ୍‌ଚୁପ୍ ପୁଲିସ୍ ।

ପୁପୁନ : ପୁଲିସ୍(ପତିତପାବନ ସହିତ ଅନ୍ୟମାନେ ଆସନ୍ତି)

ପତିତ : ମୁଁ ତ ସେହି କଥା ଭାବୁଛି ଏବେ ତ କଳିଯୁଗ କଳିଯୁଗ ପରେ ସତ୍ୟଯୁଗ ଆସିବା କଥା ସତ୍ୟ ନ ଆସି ଏ ତ୍ରେତୟା କେମିତି ଆସିଗଲା ?

ପ୍ରସନ୍ନ : ଆପଣଙ୍କୁ କିଏ କହିଲା ?

ପତିତ : କିଏ କହିଲା ମାନେ, T.V., Radioରେ ପ୍ରଚାର ହେଲା । ତା'ଛଡ଼ା ତୁଣ୍ଡବାଇଦ ପରା ସହସ୍ର କୋଶ, ଖାଲି ସେତିକି ନୁହେଁ ରାଉରକେଲା, କଟକ, ଭୁବନେଶ୍ୱରର ଢେଙ୍କାନାଳ ଏମିତିକି ଦିଲ୍ଲୀର ମନ୍ଦିରମାନଙ୍କରେ ଦୀପ ଜଳିଲାଣି, ଶହଶହ ରାମଭକ୍ତ ହନୁମାନ ପ୍ରେମୀ ଦଳଦଳ ହୋଇ ଏ ସହରକୁ ଅର୍ଥାତ୍ ଆପଣଙ୍କ ଘରକୁ ଛୁଟି ଲେନି, ମୁଁ ଆସି ଆଗରୁ ସତର୍କ ହୋଇଗଲି ବୋଲି ଏତେବଡ଼ ଘଟଣାକୁ ଅନାୟାସରେ ସାମ୍ନା କରିପାରିଲି ।

ପ୍ରସନ୍ନ : ଯାକୁ ହିଁ କହନ୍ତି ଗୁଜବ ।

ପତିତ : ହେଲେ ଏ ଗୁଜବ ଆସିଲା କୋଉଁଠୁ ?

ପ୍ରସନ୍ନ : ସେହିଟାକୁ ପ୍ରଥମେ ଖୋଜନ୍ତୁ ଅକଲ ଗୁଡ଼ମ୍ ।

ପତିତ : ହଁ, ପ୍ରଥମେ ପ୍ରଥମେ - ହଁ(ଡାକନ୍ତି) ପ୍ରଧାନ ପ୍ରଧାନ ବେ ସେ ଭାଣ୍ଡିଆ T.V.ର ରିପୋର୍ଟର କ'ଣ କଲୁ । ସେହିଟା ହଉଛି ଅସଲ । (ଅକଲ ଆସନ୍ତି)

ଅକଲ : ଆଜ୍ଞା ମୁଁ ଅକଲପୁରରୁ ଅକଲ ଗୁଡୁମ୍ ଦାସ From ଭାଣ୍ଡିଆ T.V.

ପତିତ : ତମର ଅକଲ ଅଛି ।

ଅକଲ : ସେଇଥିପାଇଁ ତ ମୁଁ ଅକଲଗୁଡୁମ୍ ।

ପତିତ : ଏ ମାଂକଡ଼ News ?

ଅକଲ : ପ୍ରଥମେ ଆମେ ପ୍ରଚାରିତ କରିଥିଲୁ ?

ପତିତ : Newsଟା ପାଇଲ କୋଉଠୁ ?

ଅକଲ : କିଣିଲି ।

ପତିତ : କାହାଠୁ ?

ଅକଲ : ଆଶ୍ଚର୍ଯ୍ୟ T.V.ରୁ ପାଞ୍ଚଶହରେ କିଣି ଭାଣ୍ଡିଆକୁ ୫ହଜାରରେ ବିକି ଦେଲି ।

ପତିତ : ଏ News କ'ଣ ସତ ?

ଅକଲ : ଏହା ଏକ ଗୁଜବ ବୋଲି ଆମେ T.V.ରେ କହିସାରିଲୁଣି ।

ପତିତ : ଏ ଗୁଜବକାରୀ କିଏ ?

ଅକଲ : ଆରପଟେ ବସିଛି ଡାକିବ ।

ପତିତ : ଡାକ ଏଠାକୁ (ଯାଏ, ପ୍ରଶାନ୍ତ ଆସେ)

ପ୍ରଶାନ୍ତ : ଆଜ୍ଞା ନମସ୍କାର ।

ପତିତ : ଆପଣ ଏ ଗୁଜବର ସଂବାଦଦାତା ।

ପ୍ରଶାନ୍ତ : ନାଇଁ ଜମା ନୁହେଁ ।

ପତିତ : ଏୟ ପତିତପାବନ କିଛି ଶୁଣିବନି ।

ପ୍ରଶାନ୍ତ : ତା'ହେଲେ ଆଉ କହିବି କାହିଁକି ?

ପତିତ : ଏ ବାବୁଙ୍କ ନଡ଼ିଆଗଛରେ ମାଙ୍କଡ଼ ଉଠବସ୍ ହେଉଥିଲା ।

ପ୍ରଶାନ୍ତ : ମୁଁ ଦେଖିନି କିନ୍ତୁ ଶୁଣିଛି ।

ପତିତ : କୋଉଠୁ ?

ପ୍ରଶାନ୍ତ : ଜଣେ ଭିକାରିଠୁ ।

ପତିତ : ଜଣେ ଭିକାରି ଯେ ସତ କହିଲା ବିଶ୍ୱାସ କଲ କେମିତି ?

ପ୍ରଶାନ୍ତ : ତାକୁ ପଚାରିଲି ତୁ କୋଉଠୁ ଶୁଣିଲୁ ? ସେ କହିଲା ତା' ସ୍ତ୍ରୀଠୁ ଶୁଣିଛି । ତା' ସ୍ତ୍ରୀ କହିଲା – ତା' ପୁଅଠୁ ଶୁଣିଛି । ତା' ପୁଅ କହିଲା – ସାଇକେଲ୍ ଦୋକାନୀଠୁ ଶୁଣିଛି । ସେ କହିଲା – ପୁଚୁକାବାଲାଠୁ ଶୁଣିଲି, ସେ କହିଲା ପାମ୍ପଡ଼ବାଲାଠୁ ଶୁଣିଲି, ସେ କହିଲା ଚା' ଦୋକାନୀଠୁ ଶୁଣିଲି – ଚା' ଦୋକାନୀ କହିଲା କ୍ଷୀରବାଲାଠୁ ଶୁଣିଲି ଆଉ .......

(ପଦିଆ ଆସେ)

ପଦିଆ : ଆଜ୍ଞା ହଜୁର ମୁଁ ଏଇଠୁ ଶୁଣିଲି ।

ପତିତ : କ'ଣ ଶୁଣିଲୁ ?

ପଦିଆ : ଗୋଟିଏ ମାଙ୍କଡ଼ ଗୋଟିଏ ନଡ଼ିଆଗଛକୁ ଥରକେ ସାତଫୁଟ୍ ଚଢୁଛି ତିନିଫୁଟ୍ ଖସୁଛି ।

ପତିତ : କିଏ କହୁଥିଲା ?

ପୁପୁନ୍ : ମୁଁ ମୋ ଅଂକବହିର ପ୍ରଶ୍ନ ପଢୁଥିଲି –

ପ୍ରସନ୍ନ : ଏଇ ସେ ବହି ଓ ପ୍ରଶ୍ନ ।

ପତିତ : (ପଢ଼ି) ଗୋଟିଏ ମାଙ୍କଡ଼ ଗୋଟିଏ ନଡ଼ିଆଗଛକୁ ଥରକେ ସାତଫୁଟ୍ ଚଢୁଛି ଓ ତିନିଫୁଟ୍ ଖସୁଛି ଆଠଥରରେ ସେ ଅଗରେ ପହଞ୍ଚିଲା ଗଛର ଉଚ୍ଚତା କେତେ ?

ବେ ଇଏ ତ ଏକଦମ୍

ପର୍ଶୁ : କୁଆ ଉଡ଼ିଗଲେ ଛୁଆ ଉଡ଼ିଗଲା -

ପୃଥ୍ୱୀରାଜ : ହସି ଦେଲେ ହବନି - ମୁଁ କିଏ ? ଆଡ଼ଭୋକେଟ୍ ପୃଥ୍ୱୀରାଜ ମହାନ୍ତି । କାଲି, କାଲି ସକାଳେ ଏ ସମସ୍ତଙ୍କୁ ନେଇ କାଠଗଡ଼ାରେ ଠିଆ କରାଇଦେବି ।

ପୁପୁନ : ଜେଜେ ସବୁ ଦୋଷ ତ ମୋର ।

ପୃଥ୍ୱୀରାଜ : କ'ଣ ? ତୁ ଓକିଲ ହବୁ କି ?

ପୁପୁନୁ : ଜେଜେ ତମ ଅକଲ ଗୁଡୁମ୍ ହୋଇଗଲା କି ?

- ଅନ୍ଧାର -

## ଏଥିରେ ଥିବା ଚରିତ୍ରମାନେ

- ସୀମା
- ଅସୀମା
- ଗୌରୀ
- ଭାନୁ
- ମା'
- ବାପା
- ଓକିଲ
- ଅଧ୍ୟାପକ
- ବ୍ୟାଙ୍କବାବୁ
- ଯୁବକ(ମଣିଷ)

# ପ୍ରଥମ ଦୃଶ୍ୟ

(ସମୁଦାୟ ମଂଚଟିକୁ ତିନୋଟି Zoneରେ ବିଭକ୍ତ କରାଯାଇଥାଏ, Front Zone ଯେଉଁଠି ଅସୀମା ସୂଚନା ଦିଏ ଏବଂ Righ Zone ଓ Left Zoneରେ ଅନ୍ୟ ଚରିତ୍ରମାନଙ୍କ ଦୃଶ୍ୟ ଅଭିନୀତ ହୁଏ ପ୍ରଥମେ Light ଆସେ ସେହି Front Zone କୁ ଅସୀମା ହାତ ଯୋଡ଼ି ସୂଚନା ଦିଏ । )

ଅସୀମା : ଆଜ୍ଞା ହଁ ଇଏ ବି ଗୋଟେ ହାଟ କେବଳ ଶ୍ରାବଣ, ଭାଦ୍ର, ଆଶ୍ୱିନ, କାର୍ତ୍ତିକ ପୌଷ ଓ ଚୈତ୍ରମାସକୁ ଛାଡ଼ିଦେଲେ ବର୍ଷର ଆଉ ସମସ୍ତ ମାସରେ ଏ ହାଟ ନିୟମିତ ଭାବରେ ବସିଥାଏ । ଏବେ ପୁଣି ଏ ହାଟର ଚାହିଦା ଏତେ ବଢ଼ି ଗଲାଣି ଯେ ଶ୍ରାବଣ ଭାଦ୍ର ମାସରେ ବି ଲୁଚା ଚୋରାରେ ଏ ହାଟ ବସିପଡୁଛି । କନ୍ୟା ପିତାମାତାଙ୍କୁ ଅଯଥା ଖର୍ଚ୍ଚାନ୍ତ ଓ ଝାମେଲାରୁ ରକ୍ଷାକରିବା ତଥା ବରମାନଙ୍କୁ ଦଲାଲମାନଙ୍କ ଶୋଷଣରୁ ରକ୍ଷାକରି ଉଚିତ ମୂଲ୍ୟ ଦେବା ଏ ହାଟର ମୁଖ୍ୟ ଉଦ୍ଦେଶ୍ୟ ଏ ହାଟ ଏବେ ଆରମ୍ଭ ହୋଇଯାଇଛି ଆପଣମାନଙ୍କୁ ଅନୁରୋଧ ଆପଣମାନଙ୍କର ଯଦି ବର କିଣିବାର ଥାଏ ବା ବିକିବାର ଥାଏ ତା'ହେଲେ ଆସନ୍ତୁ ଦେଖନ୍ତୁ କିଣନ୍ତୁ ଅବା ବିକନ୍ତୁ, ନିଜକୁ ଉଦ୍ଧାର କରନ୍ତୁ, ପ୍ରକାଶ ଥାଉ କି ଆମ୍ଭ ହାଟରେ କିସମ କିସମର ବର ଗଚ୍ଛିତ ଅଛି । ଯାହା ଚାହିଁବେ ଯେମିତି ଚାହିଁବେ ଇଚ୍ଛା ମୁତାବକ ବାଛିନେବେ ଆସନ୍ତୁ । (ଏହି

ସମୟରେ ଗୌରୀନାନୀ ବୋଲି ଜଣେ ବୁଢ଼ୀ ଆସେ) କିଲୋ ଗୌରୀ ନାନୀ । କୁଆଡ଼େ ?

ଗୌରୀ : ଆଲୋ ତୁ ପରା ଗୋଟେ କ'ଣ ହାଟ ବସେଇଛୁ ?

ଅସୀମା : ହଁ କାହିଁକି ?

ଗୌରୀ : ଆମ ମକରାଟା ପାଇଁ ଆଇଥିଲି ।

ଅସୀମା : ମକରାଇ କ'ଣ କରୁଛି କି ?

ଗୌରୀ : କାହିଁକି ? ତୁ କ'ଣ ଜାଣିନୁ ? ସିଏ ପରା ମାସେ ହେବ ମେଲଟେରୀ ହେଇଗଲାଣି ।

ଅସୀମା : ଓ ହୋ ମିଲିଟାରୀ ।

ଗୌରୀ : ଆଉ ?

ଅସୀମା : ଏ ମିଲିଟାଣରୀ ବରଙ୍କ ଦର ତ ବେଶି ଉଠିବନି । ହଉ କ'ଣ ନବ ?

ଗୌରୀ : କାହିଁକି ଅତିକମ୍‌ରେ ଫଟଫଟିଆଟେ ଦଶଭରି ସୁନା, ଲକ୍ଷେ କି ଦିଲକ୍ଷ ଟଙ୍କା ଆଉ ଖଟ, ପଲଙ୍କ, ଚିୟାର ଟେବୁଲ ।

ଅସୀମା : ହଉ ହଉ ହାୟ ସେପଟ ଚାଲିରେ ଦମ୍ ଧରି ଛିଡ଼ାହୁଅ ଲୋକ ଆସିଲେ ମୁଁ ପଠଉଛି ।

ଗୌରୀ : ହଉ, ଟିକିଏ ଯଦି ଅଧିକା ମିଳିବ ଦେଖିବୁରେ

ଅସୀମା : ହଉ ଲ ଦେଖିବା ତମେ ଆଗ ଛିଡ଼ାହୁଅ । (ଗୌରୀ ଯାଏ)

ଅସୀମା : ହୁଁ, ଆଗକାଳରେ ମିଲିଟାରୀ ଲୋକଙ୍କୁ ଲୋକେ ଝିଅ ଦଉ ନଥିଲେ ଏବେ ତାଙ୍କ ଭାଉ ଦେଖ । (ଗୋଟେ ମୋଟି ଝିଅ ଆସେ) କିରେ କିରେ କ'ଣ ?

ଝିଅ : ହଇଓ ତମେ ପରା ବର ବିକୁଛ ?

ଅସୀମା : ହଁ କ'ଣ ହେଲା ?

ଝିଅ : କେତେ ଦାମ୍ ?

ଅସୀମା : ତମେ ଦେଖ କାହାକୁ ନବ ଜିନିଷ ଦେଖିଲେ ସିନା ଦର କଷିବ ।

ଝିଅ : ଆରେ ଯାହାକୁ ତାକୁ ଗୋଟେ ଦେଇଦିଅ ଯାହା ଟଙ୍କା ନବ ନବ, ମୁଁ ଦଉଛି, ହଁ ଟିକିଏ ମୁଟାସୁଟା ଦେଖିଦେବ ଯିମିତି ସବୁ କାମକୁ ପାରୁଥିବ ।

ଅସୀମା : ହଉ ଇଏତ ହାଟରେ ଶହଶହ ବନ୍ଧା ହୋଇଛନ୍ତି ତମେ ଯାଅ ଯାହାକୁ ହେଲେ ଜଣକୁ ବାଛ କିଣାବିକା ବେଳେ ଦେଖିବା ।

ଝିଅ : ହଉ ମୁଁ ତେବେ ଦେଖେ (ଯାଏ) ।

ଅସୀମା : ଏଇମାନେ ବରମାନଙ୍କ ଅଯଥା ଦାମ ବଢ଼େଇ ଦଉଛନ୍ତି । (ଭାନୁମତୀ ଆସେ)

ଭାନୁମତୀ : ଆଲୋ ଝୁଅ ମୋ ଝିଅଟା ଟିକିଏ ଟେରି ଜନମ ବେଳେ କ'ଣ କେମିତି କାନରେ ପାଣି ପଶି ଯାଇଥିଲା ଯେ ଟିକିଏ କମ ଶୁଭେ ସେଇଲାଗି ଟିକିଏ.... ହେଲା, ହେଲେ ଦି ଲକ୍ଷ ଅଧିକା ପଡ଼ିବ ପଡୁ ବର ଗୋଟେ ଦେଖିଦିଅ ।

ଅସୀମା : ଭିତରକୁ ଯାଅ ବାଛ ତା' ପରେ ଦେଖିବା ଦରଦାମ୍ ପାଇଁ କଥାଟା ରହିଯିବନା ।

ଭାନୁମତୀ : ମୁଁ ଆଗରେ ଯାଉଛି ତମେ ଟିକିଏ ଆସିବ ।

ଅସୀମା : ହଁ ହଁ ଚାଲ (ଭାନୁମତୀ ଯାଏ) ଏବର୍ଷ ହାଟ ଜମିଲା ଭଳିଆ ଲାଗୁଛି । (ସୀମା ଆସେ) ଆରେ ସୀମା ତୁ ?

ସୀମା : ହଁ ବାଧ୍ୟ ହୋଇ ତୋ ହାଟକୁ ଆସିବାକୁ ପଡ଼ିଲା ।

ଅସୀମା : ମୁଁ ଜାଣିଥିଲି ତୁ ଦିନେ ଆସିବୁ ।

ସୀମା : ନା ମୁଁ ଏ ପ୍ରଚଳିତ ବିବାହ ପରଂପରାକୁ ଘୃଣା କରେ ତଥାପି ବାପା ମା'ଙ୍କ ବାଧ୍ୟରେ - ଆସିବାକୁ ବାଧ୍ୟ ହେଲି ।

ଅସୀମା : ମଉସା ମାଉସୀ ଆସିଛନ୍ତି ?

ସୀମା : ନା, ମୁଁ ମନାକଲି ।

ଅସୀମା : କାହିଁକି ?

ସୀମା : ସେମାନଙ୍କର ଯୌତୁକର ସାର୍ଟିଫିକେଟ୍ ଧରି ମୁଁ ଏ ବିବାହ ବୈତରଣୀ ପାରି ହେବାକୁ ଚାହେଁନି ।

ଅସୀମା : ଆଉ ?

ସୀମା : ମୁଁ ଆସିଛି, ବାସ୍ ମୁଁ ମୋପାଇଁ ସାଥୀଟେ ବାଛିବି ।

ଅସୀମା : ଖାଲି ହାତରେ ?

ସୀମା : ଭାବିଛି ତ ମୁଁ ବିନା ଟଙ୍କାରେ ସଫଳ ହେବି ।

ଅସୀମା : କିନ୍ତୁ ତୁ କ'ଣ ପାରିବୁ ?

ସୀମା : ଦେଖିବି ଚେଷ୍ଟା କରିବି ।

ଅସୀମା : ଦେଖ୍ ।

ସୀମା : ମୋତେ ଟିକେ ହାଟ ଦେଖେଇଦେ ।

ଅସୀମା : ଚାଲ, ଆଜି ମୁଁ ତୋତେ ହାଟର ଏ ମୁଣ୍ଡରୁ ସେ ମୁଣ୍ଡ ଯାଏ ବୁଲେଇବି ଦେଖେଇବି ତା' ପରେ ତୋ ଚଏସ୍ ।

ସୀମା : ଖାଲି ମୋର କ'ଣ ତୁ କ'ଣ choice କରିବୁନି ?

ଅସୀମା : ହଉ ଚାଲ, ଆଗ ଏଇଠୁ ଦେଖ । ସାରା ହାଟକୁ ଚାହାଁ । କେମିତି ଧାଡ଼ି ଧାଡ଼ି ଚାଳି ସବୁ ସଜା ହେଇଛି ।

ସୀମା : ହଁ ।

ଅସୀମା : ତା' ଭିତରେ ବରମାନେ ମୁହଁ ଘୋଡ଼େଇ ବସିଛନ୍ତି ।

ସୀମା : ଏମିତି କ'ଣ ?

ଅସୀମା : ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ଶ୍ରେଣୀ ପାଇଁ ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ଚାଳି ରହିଛି, ଯେମିତି ଅଧ୍ୟାପକ ଚାଳି କିରାଣୀ ଚାଳି, ପିଅନ ଚାଳି, ଡାକ୍ତର ଚାଳି ଇଂଜିନିୟର ଚାଳି, ମାଷ୍ଟର ଚାଳି, ଓକିଲ ଚାଳି ।

ସୀମା : ଆଚ୍ଛା ଆଚ୍ଛା ।

ଅସୀମା : କୋଉ ଚାଳିକୁ ଯିବା ?

ସୀମା : ଚାଲ ଆଗ ବଜାର ବୁଲି ଦେଖିଯିବା ତା'ପରେ କିଣିବା ।

ଅସୀମା : ଆଚ୍ଛା ହଉ ଆସ । (Front Zone ଅନ୍ଧାର ହୁଏ Left Zoneକୁ ଆଲୋକ ଆସେ) ।

ଅସୀମା : ଦେଖ ଏଇଟା ହଉଛି ଅଧ୍ୟାପକ ଚାଳି । ଏ ଚାଳିରେ କେବଳ ଅଧ୍ୟାପକମାନେ ଥାଆନ୍ତି ।

ସୀମା : ଅଧ୍ୟାପକମାନେ କ'ଣ ହାଟରେ ବିକ୍ରି ହୁଅନ୍ତି ।

ଅସୀମା : ଶୁଣ ଏଟା ହଉଛି ବିବାହ ମାର୍କେଟ୍ ଏଠି ସବୁପ୍ରକାରର ବର ମିଳନ୍ତି । ଆଉ ଏବେ ଅଧ୍ୟାପକମାନଙ୍କର ଟିକିଏ ଭାଉ ବଢ଼ି ଯାଇଛି ।

ସୀମା : ସେମାନେ କ୍ଲାସ୍‌ରେ ଏତେ ସୁନ୍ଦର ଭାବରେ କହନ୍ତି ଏଣେ ନିଜେ ହାଟରେ ବସି ନିଜକୁ ନିଲାମ କରନ୍ତି ।

ଅସୀମା : ଆରେ କ୍ଲାସ୍‌ରେ ଦରମା ବିନିମୟରେ କଥା ବିକନ୍ତି ଏଠି ଯୌତୁକ ହାଟରେ ନିଜକୁ ନିଲାମ କରନ୍ତି । ଶୁଣ ସେ କ'ଣ କହୁଛନ୍ତି ।(ମୁହଁ ଘୋଡ଼ା ହୋଇଥିବା ଅଧ୍ୟାପକଙ୍କ ମୁହଁରୁ ପରଦା ଉଠେଇ ଦିଏ)

ଅଧ୍ୟାପକ : ମୁଁ ଜଣେ ଅଧ୍ୟାପକ । ଏବେ U.G.C.Scale ଅନୁସାରେ ମୋ ଦରମା ଜଣେ I.A.S., I.P.S. ଅଫିସ୍‌ରଠୁ କିଛି କମ୍ ନୁହେଁ । ଏଣେ କାମ ବୋଲି କିଛି ନାହିଁ । ମାସକୁ ଗୋଟେ·ଯୋଡ଼େ କ୍ଲାସ୍ ହେଲେ ଯଥେଷ୍ଟ ଆଉ ଟିଉସନ୍‌ରୁ ଯାହା ଆପଣମାନେ ତ ଜାଣୁଥିବେ ଯା ବାଦେ ଖାତା ଦେଖା ସମୟ ହେଲେ ଆମ ହାତକୁ ବେଶ୍ ଦି'ପଇସା ଆସେ । ଯଦି ଇଉନିଭରସିଟିରେ କାହାକୁ ହାତ କରି ପିଲାଙ୍କ ରେଜଲ୍ଟ ଟିକିଏ ଏପଟସେପଟ କରିଦେଇ ପାରିଲି ତା'ହେଲେ ଆମର ମାସକୁ ଦରମା ଦଶଟା କଲେକ୍ଟରଠୁ ବି ବେଶି ହେଇଯିବ ।

ସୀମା : ନିଜକୁ ତ ଏତେ ହାଟରେ ବିକି ପାରୁଛନ୍ତି ପୁଣି ଏ ବିବାହ ବଜାରରେ ନିଲାମ ହଉଛନ୍ତି କାହିଁକି ?

ଅଧ୍ୟାପକ : କେବଳ ଏ ସମାଜରେ ନିଜର ଗୁରୁତ୍ୱ ଜାହିର କରିବା ପାଇଁ ବର୍ତ୍ତମାନ ବାହାଘର ହେଉଛି ପୁଅମାନଙ୍କର ଯୋଗ୍ୟତାର ମୁଖ୍ୟ valuation centre. ତେଣୁ ଏ ମାର୍କେଟ୍‌ରେ ଯିଏ ଯେତେ ବେଶି ଦାମ୍ ପାଇ ପାରିଲା ସମାଜ ତାକୁ ସେତେ ବେଶି ସମ୍ମାନ ଦେଲା ତେଣୁ ଆସନ୍ତୁ ଆମକୁ ଉଚିତ ଦାମ ଦେଇ କିଣନ୍ତୁ ।

ଅସୀମା : କ'ଣ ସୀମା ?

ସୀମା : ଆଗକୁ ଯିବା, ସାର୍ ନମସ୍କାର ।

ଅଧ୍ୟାପକ : କ'ଣ ହେଲା ?

ଅସୀମା : (ମୁହଁ ଢାଙ୍କି ଦିଏ) ଆମେ ଆସୁଛୁ । (Right Zoneକୁ ଯାଆନ୍ତି)

(Right Zoneରେ ସେମିତି ଜଣେ ମୁହଁ ଢାଙ୍କି ଛିଡ଼ା ହୋଇଥାଏ ।)

ଅସୀମା : ଦେଖ ଏଇ ଯେ ଲମ୍ବା ପଟିଟା ଅଛି ଏଟା ବେଙ୍କ ପଟି ଏ ବେଙ୍କବାଲାଙ୍କର ଭାଉ କହିଲେ ନ ସରେ କିନ୍ତୁ ଏବେ ହଠାତ୍ କିଏଜଣେ ନୂଆ ଅର୍ଥମନ୍ତ୍ରୀ ହୋଇଛି ଯେ ସିଏ କ'ଣ ଏ ବେଙ୍କବାବୁମାନଙ୍କୁ ଚାରିପଟରୁ କଷି ଦେଲାଣି ଫଳରେ ଏମାନଙ୍କର ଦର ହଠାତ ଖସି ଯାଇଛି । କିନ୍ତୁ ନୂଆ ଦର ତାଲିକା ବଜାରକୁ ଆସି ନାହିଁ ତ ତେଣୁ ସେହି ପୁରୁଣା ଲିଷ୍ଟ ଅନୁସାରେ ଏମାନେ...(ମୁହଁ ଖୋଲିଦିଏ) କି ହୋ ବେଙ୍କବାବୁ ।

ବେଙ୍କବାବୁ : ଆଜ୍ଞା ।

ଅସୀମା : କ'ଣ ଢୁଳେଇ ଗଲେଣି କି ?

ବେଙ୍କବାବୁ : ନାଇଁ ନାଇଁ କେହି କ'ଣ ଆସିଛନ୍ତି କି ?

ଅସୀମା ନାଇଁ ନାଇଁ ଆସିବେ ଦର ଟିକିଏ ଖସାଅ ।

ବେଙ୍କବାବୁ : ଆପଣ ତ ମାର୍କେଟ୍ ଦେଖୁଛନ୍ତି ଦର କ'ଣ କେବେ ଖସେ ? ହଉ କେହି ଆସନ୍ତୁ ନ ହେଲେ ଦି ପାଞ୍ଚଲକ୍ଷ ପାଇଁ କଥା ରହିଯିବ ନା ?

ଅସୀମା : ନାଇଁ କଥା କ'ଣ କି ଲୋକମାନେ ଖବରକାଗଜରୁ ସବୁ କଥା ଜାଣିସାରିଲେଣି ତ !

ବେଙ୍କବାବୁ : ହଉ ନ ହେଲା ନାଇଁ Four wheeler ବଦଳରେ two wheelerଟେ ହେଲେ ଚଳେଇ ଦବା ନ ହେଲେ...

ଅସୀମା : ହଉ ଦେଖିବା ଗରାଖ ଆସନ୍ତୁ ।

ବେଙ୍କବାବୁ : ଟିକିଏ ଜଲଦି କର । ଛିଡ଼ା ହୋଇ ହୋଇ ଗୋଡ଼ ବିନ୍ଧିଲାଣି ।

ଅସୀମା : କ'ଣ ସୀମା ? ଆଗେଇବା ?

ସୀମା : ଏ ପଟକୁ ନୁହେଁ ସେପଟକୁ ।

ଅସୀମା : (ମୁହଁ ଢାଙ୍କି ଦେଇ) ହଉ ।

ସୀମା : ଆଛା ଅସୀମା ! ଏପଟ ଚାଳିଟା କ'ଣ ପୂରାପୂରି ଫାଙ୍କା ପଡ଼ିଛି ।

ଅସୀମା : ସବୁବେଳେ ପ୍ରାୟ ଫାଙ୍କ ପଡ଼ିଥାଏ ।

ସୀମା : କାହିଁକି ?

ଅସୀମା : ଏଟା ଓଡ଼ିଆ ବଜାର ତ ଏଠି I.A.S., I.P.S.ବର ମିଳନ୍ତି ନାହିଁ ।

ସୀମା : ସେଟା ତା'ହେଲେ I.A.S. ଚାଳି ?

ଅସୀମା : ହଁ ଏଇଠି advance booking ହୁଏ, ସେଠି ଆଗରୁ ଟଙ୍କା ଡିପୋଜିଟ କରି line ଦେବାକୁ ପଡ଼େ ।

ସୀମା : ସତେ ?

ଅସୀମା : ହଁ, ତୁ ସେପଟକୁ ଚାହାଁନା ଇଆଡ଼କୁ ଆ ।

ସୀମା : ଆରେ ସେଠି ଜଣେ କ'ଣ ସ୍ତ୍ରୀଲୋକ ଅଛି ?

ଅସୀମା : ଆସୁନୁ ତା' ପାଖକୁ ଯିବା (ଯାଆନ୍ତି Left Zoneକୁ)

ସୀମା : ଏଠି ତ ବର ନାହାନ୍ତି ?

ଅସୀମା : ନା ଏଠି ବର ନାହାନ୍ତି ସେମାନେ ପାଠପଢୁଛନ୍ତି । ଡାକ୍ତରୀ ଇଂଜିନିୟରିଂ କଲେଜରେ ସିଟ୍ ପାଇଛନ୍ତି ତ ତାଙ୍କ ଦାମ ରାତାରାତି ବଢ଼ି ଯାଇଛି । ଦେଖୁନୁ ତାଙ୍କ ମା'ମାନେ କେମିତି ଅଣ୍ଟା ଭିଡ଼ି ଦର କଷୁଛନ୍ତି ।

ମାଆ : ଆଉ ମୋ ପୁଅକୁ କ'ଣ ପାଇଛ କି ? ଦୁତିୟା ପୂଜି ଜନମ ଦେଇଛି ଇମିତି ଶସ୍ତାରେ ନୁହେଁ । ଗୋଟେ ପୁଅ ଡାକ୍ତରୀ ପଢୁଛି ତ ଆଉ ଗୋଟେ ଇଞ୍ଜିନିୟରିଂ ପଢୁଛି । ଦିନ କେଇଟାରେ ଲକ୍ଷଲକ୍ଷ ବୋହି ଆଣିବ । ଆସ କିଏ ଝିଅ ଦବ ଆସ । ସେମାନଙ୍କ ପଢ଼ାଖର୍ଚ୍ଚ ତ ଦବ, ତା' ସାଙ୍ଗକୁ ମୋଟର, କୋଠା, ସୁନା, ଟଙ୍କା ବାଟଖର୍ଚ୍ଚ ।

ସୀମା : ଥାଉ ଥାଉ ।

ଅସୀମା : କଲେଜରେ ସିଟ୍ ପାଇଲା ମାତ୍ରେ ଏ ବରମାନେ ନିଲାମ ହୋଇଯାଆନ୍ତି ।

ସୀମା : ଆଗକୁ ଚାଲ । (ଏହି ସମୟରେ ଭାନୁମତୀ ଆସେ)

ଅସୀମା : କ'ଣ ପସନ୍ଦ ହେଲା ?

ଭାନୁ : ହଁ ହଁ ଆସ । (Right zoneକୁ ଯିବା ବେଳକୁ ଗୌରୀ ଗାଉଥାଏ)

ଗୌରୀ : (ଗୀତ) ପୁଅ ମୋର ମେଲଟେରୀ ଲୋ

ମୋର କନିଆ ମାତା

ଝିଅକୁ ତୁମର ଦେଖେଇବ ନେଇ

କାଶମିରୀ କଲିକତା ଲୋ

ପୁଅ ପାଇଁ ଫଟଫଟିଆଟେ ଦବ, ବାଟାର ପାଦକୁ ଜୋତା ଲୋ

ବାଟ ଖରଚକୁ ପଚାଶ ହଜାର

ଆଉ ସବୁ ପଛ କଥା ଲୋ

ମୋର କନିଆ ମାତା ।

ଅସୀମା : ଶୁଣିଲୁ ଏ ବରର ଦାମ୍ କେତେ ?

ଗୌରୀ : ହଁ, ପୁଅ ମୋର ମିଲିଟେରୀ ସିପେଇ, ହାତରେ ବନ୍ଧୁକ ଅଛି ଏକା ଗୁଳିକେ ଦଫା ଶେଷ କରିଦବ ।

ସୀମା : ସତେ ?

ଗୌରୀ : ଆଉ ?

ଭାନୁ : ହଉ ହେଲା ମୁଁ ସବୁ ଦେବି ।

ଗୌରୀ : ସବୁ ଦେବ ?

ଭାନୁ : ସବୁ ଦେବି ସମୁଦୁଣୀ ହେ !

ତମେ ଯାହା କହିବ

ଝିଅକୁ ମୋହର ବୋହୂ କରିନିଅ

ସୁଖରେ ଘର କରିବ ।

ଗୌରୀ : ଆସ ଯିବା ସମୁଦୁଣୀ ହେ

ଆସ ଘରକୁ ଯିବା

ବାହାଘର ସାରି ପୁଟୁଳିଟେ ଧରି

ତିରିଥରେ ବାହାରିବା

(ଦୁହେଁ ହାତ ଧରାଧରି ହୋଇ ନାଚି ନାଚି ଚାଲି ଯାଆନ୍ତି ।)

ସୀମା : ଆଶ୍ଚର୍ଯ୍ୟ କଥା ।

ଅସୀମା : ଆଗକାଳରେ ମିଲିଟାରୀବାଲାଙ୍କୁ ଲୋକେ ଝିଅ ଦଉ ନଥିଲେ । ଏଇନା ତାଙ୍କ ଭାଉ ଦେଖ ।

ସୀମା : ତୋ ହାଟରୁ ବର କିଣିବା ସହଜ ନୁହେଁ ।

ଅସୀମା : ତୁ ସିନା କିଣି ପାରୁନୁ ଏଇ ଦେଖ ଏଇ ଯୋଉ ଝିଅଟା ଆସୁଛି ତୋରି ସାମ୍ନାର କେମିତି ବର କିଣିନବ ଦେଖ ।

(ଗୋଟେ ମୋଟା ଝିଅ ଆସେ)

ଝିଅ : ଯାହା ନବ ନିଅ ଏଇ ବରଟାକୁ ଦିଅ । ମୁଁ ଆଉ ଚାଲି ପାରିବିନି ।

ଅସୀମା : ଏଇଟାକୁ ନବ ?

ଝିଅ : ଦିଅ ହେ ଯୋଉଟା ଦଉଚ ।

ଅସୀମା : ହଉ ନବ ତ ନବ ଟିକେ ଦେଖ(ମୁହଁ ଖୋଲିଦିଏ)

କବି : (କବିତା ଆବୃତ୍ତି କର)

ଯଉତୁକ ନେବା ଯେତେ ଅପରାଧ

ଯଉତୁକ ଦେବା ସେତିକି ଦୋଷ

ଯେତେ ନେଉଥିଲେ ଯେତେ ଦେଉଥିଲେ

ମରିବନି ଯଉତୁକର ଶୋଷ ।

ସୀମା : ଇଏ ତ ଜଣେ କବି ।

ଝିଅ : ତା'ହେଲେ ଏ ବର କିଛି ନବନି ?

କବି : ନା ନା ତାହା କେମିତି ହବ ?

ସୀମା : ତମେ ପରା କବି ? କବିତାରେ ମନା କରୁଛ ?

କବି : ଓ ହୋ ଯୌତୁକ ନେବି ବୋଲି ଯଦି କବିତାରେ ଲେଖିଦିଏ ତା'ହେଲେ ମୋ କବିତା କ'ଣ କାଗଜରେ ଛପା ହବ ? ନା ମୋ କବିତା ଶୁଣି କିଏ ତାଳି ମାରିବ ? ନା ମୋତେ ଜଣେ ଉଚ୍ଚକୋଟୀର କବି ବୋଲି କୋଉଠୁ ସମ୍ମାନ ମିଳିବ ।

ସୀମା : କିନ୍ତୁ ଯୌତୁକ ନେଲେ ଏ ସମାଜ ଆପଣଙ୍କୁ ବଦନାମ କରିବନି ?

କବି : ଓ ହୋ

ଯଉତୁକ ଦିଅ ଲୁଚେଇ ଲୁଚେଇ

ଯଉତୁକ ବୋଲି ତାକୁ କୁହ ନାହିଁ

ଉପହାର ତା'ର ନାଁ

ଯାହା ଅଛି ଦିଅ ଝୁଲିରେ ପୂରାଏ

ସହଳ ସହଳ ହାଟରୁ ପଳାଏ

ବଦନାମ ହେବା କିଆଁ ?

ଝିଅ : ଛାଡ଼, ସେ ନାମ ବଦନାମରୁ କ'ଣ ମିଳିବ ? କେତେ ଦାମ କୁହ ?

କବି : ନଗଦ ପଚିଶି ହଜାର

ଝିଅ : ନିଅ । (ଦେଲା) ଆଉ ?

କବି : ଗାଡ଼ି, ସୁନା, କୋଠା ଏମିତି ।

ଝିଅ : ତିନିଟା ଗାଡ଼ି ତିରିଶ ଭରି ସୁନା ଦୁଇଟା ବଂଗଳା ଆଉ କ'ଣ ?

କବି : ବାସ୍ ବାସ୍ ଏବେ ମୁଁ ପୁରା ରାଜି ।

ଝିଅ : ମୁଁ ରାଜି ହେଲେ ତ ।

କବି : ଆପଣ ରାଜି ନ ହୁଅନ୍ତୁ ଆପଣଙ୍କ ଝିଅ ନିଶ୍ଚୟ ରାଜି ହେବେ ।

ଝିଅ : ଆରେ ମୁଁ ନିଜେ ଝିଅ ।

କବି : ନିଜେ ଝିଅ (ମନେ ମନେ) ଏ ଝିଅକୁ.... ? ହଉ ଏତେଗୁଡ଼ା ଡିମେଣ୍ଡ ।

ଝିଅ : ତମକୁ ମୁଁ ପରୀକ୍ଷା କରିବି ।

କବି : ପରୀକ୍ଷା ? ନା ନା ମୁଁ ସେଥିରେ ରାଜି ନୁହେଁ ।

ଝିଅ : ଆଉ ଦଶହଜାର ନିଅ ।

କବି : ଆଉ ଦଶହଜାର ? ହଉ ପଚାର ।

ଝିଅ : ତୁମେ ଦୌଡ଼ ଶିଖିଛ ।

କବି : ହଁ

ଝିଅ : ମୋ ଚାରିପାଖେ ତିନିଥର ଦୌଡ଼ (ଦୌଡ଼ିଲା) ତମେ ପାଠପଢ଼ିଛ ?

କବି : ହଁ

ଝିଅ : ଅବଧାନ ପାଖରେ କେବେ ଉଠ୍‌ବସ୍ ହେଇଛ ?

କବି : ମନେ ନାହିଁ ।

ଝିଅ : କାନ ଧର ।

କବି : କାନ (ଧରିଲେ)

ଝିଅ : ପାଞ୍ଚଥର ଉଠ ବସ୍ ହୁଅ ।

କବି : କିନ୍ତୁ

ଝିଅ : ଆଉ ପାଞ୍ଚହଜାର ଦେବି ।

କବି : ପାଞ୍ଚହଜାର ? (ଉଠ୍ ବସ୍ ହୁଏ)

(ଉଠ୍ ବସ୍ ହେଉଥିବା ବେଳେ ଝିଅ ତା' ବେକରେ ଦଉଡ଼ି ଭଳି ଫୁଲହାର ପକେଇ ଟାଣି ଟାଣି ଗୋଟେ ସଂଗୀତର ତାଳେ ତାଳେ ନାଚି ନାଚି ନଚେଇ ନଚେଇ ନେଇଯାଏ)

ଅସୀମା : ସୀମା କ'ଣ ଏମିତି ଚାହିଁ ରହିଛ ?

ସୀମା : ମୁଁ ଦେଖୁଛି ଏଗୁଡ଼ା ଏମିତି ଗାଈଗୋରୁ ଭଳି ନିଲାମ ହଉଛନ୍ତି ।

ଅସୀମା : ଆଲୋ ତୋତେ ବି ସେମିତି ନିଲାମ ଡାକିବାକୁ ପଡ଼ିବ ।

ସୀମା : ନା ବାବା ନା ପଛେ ସାରା ଜୀବନ ଏମିତି ରହିଯିବି ଏଭଳି ବେପାରୀଙ୍କ ପାଖ ପଶିବିନି ।

ଅସୀମା : ତୋ ଖୁସି ।

ସୀମା : ଆଲୋ ସେ ପଟେ କ'ଣ ଏତେ ଲମ୍ବା ଗ୍ଧଳିଟା ।

ଅସୀମା : ହଁ ଆଜିକାଲି ଏ ବରଙ୍କ ସଂଖ୍ୟା ଖୁବ୍ ବେଶି ଏବେ ଏଇ ପାଞ୍ଚବର୍ଷ ହେଲା ଏ ବରଙ୍କ ସଂଖ୍ୟା ଅଚାନକ ଭାବରେ ବଢ଼ି ଯାଇଛି ।

ସୀମା : କାହିଁକି ?

ଅସୀମା : ଏବେ ଗାଁ ଗାଁ କା ଛତୁ ଫୁଟିଲା ପରି Law college ଖୋଲି ଗଲାଣି ତେଣୁ ବର୍ଷକୁ କେତେ ନା କେତେ ଓକିଲ ମାର୍କେଟ୍‌କୁ ଆସୁଛନ୍ତି । ତେଣୁ ମାର୍କେଟ୍‌ରେ ମାଲ ବେଶି ହେଲେ ଦର କମିଯାଉଛି ।

ସୀମା : ତା'ହେଲେ ଚାଲୁନୁ ଦେଖିବା କେତେ ଦାମ (Right zoneକୁ ଯାଏ ଓକିଲ ମୁହଁରୁ ପରଦା ଉଠାଇ ଦିଏ ।)

ଓକିଲ : (ବାଦାମ ଚୋବାଉ ଥାଏ)

ଅସୀମା : କ'ଣ ବାଦାମ ଚୋବଉଛନ୍ତି ?

ଓକିଲ : (ଚମକି) Yes your honour sir.

ଆଇନ ଅନୁସାରେ ଯୌତୁକ ଦେବା ଓ ଯୌତୁକ ନେବା ଏକ ଧର୍ତ୍ତବ୍ୟ ଅପରାଧ । ତେଣୁ ଆମେ କସ୍ମିନ୍‌କାଳେ ଯୌତୁକ ନେବୁନି ।

ସୀମା : (ଆନନ୍ଦରେ) ଯୌତୁକ ନେବେନି ?

ଓକିଲ : (ହସି) ହେଲେ ବାଦାମ ଚୋବେଇବୁ ପଇସା ଆଣିବୁ କୋଉଠୁ ?

ସୀମା : ଅର୍ଥାତ୍ ?

ଅସୀମା : ଏ ବରମାନେ ଏବେ କିସ୍ତିରେ ମିଳୁଛନ୍ତି ।

ସୀମା : କିସ୍ତିରେ ?

ଅସୀମା : ନଗଦ ଟଙ୍କା ଦେଇ ଯେତେବେଳେ ଜିନିଷ ବିକ୍ରି ହୁଏନି ସେତେବେଳେ ଦୋକାନୀ କିସ୍ତିରେ ବିକି ଦିଏ, ମାନେ ଏମାନେ ଚାକିରିଆ ଝିଅ ଖୋଜୁଛନ୍ତି ଫଳରେ ମାସକୁ ମାସ ଦରମା ଆକାରରେ କିସ୍ତି ସୂତ୍ରରେ ଯୌତୁକ ଟଙ୍କା ନେଇ କଚେରିରେ ବସି ବାଦାମ କିଣି ଚୋବେଇବେ ।

ସୀମା : ହେଲେ ମୋର ତ ଚାକିରି ନାହିଁ ।

ଅସୀମା : ତେଣୁ ଆଗକୁ ଚାଲ । (ପରଦା ପକେଇ ଦିଏ)

ସୀମା : ଏ ଅସୀମା ଦେଖିଲୁ ।

ଅସୀମା : ନାରୀ ମଙ୍ଗଳ ସମିତି ଅଧ୍ୟକ୍ଷା ।

ସୀମା : ବୁଝିଲୁନା ସିଏ ଯୋଉଭଳି ଲୋକ ତୋର ଏ ବର ବେପାର ଦେଖିଲେ ନା ସିଧା ଥାନାରେ ଦେଇଦେବେ ।

ଅସୀମା : ଥାନାରେ ହଉ ଦେଖିବା ଆ (ଆସନ୍ତି ଅଧ୍ୟକ୍ଷା) ନମସ୍କାର ମାଡ଼ାମ୍ ।

ଅଧ୍ୟକ୍ଷା : ଆରେ ଅସୀମା । ଆମ ମିତା ପାଇଁ ଗୋଟେ ଭଲ ବର ଦେଖ ।

ଅସୀମା : ଆପଣ ବାଛନ୍ତୁ ।

ଅଧ୍ୟକ୍ଷ : ଆରେ ସେଠି କ'ଣ ଜଣେ ବୁଢ଼ାଟେ ସିଏ କ'ଣ ବର ?

ଅସୀମା : ନାଇଁ ସେ ବରର ବାପା ତା' ପୁଅ ପୁଲିସ୍ ଚାକିରି କରିଛି ତ । ସିଏ ଏଠି ଚାଲିରେ ଠିଆ ହେଲେ ଉପୁରି ଛଡ଼ା ହାତ କରିପାରିବନି ତେଣୁ ବାପକୁ ଠିଆ କରାଇ ଚୋର ପଛରେ ଗୋଡ଼େଇଛି ।

ଅଧ୍ୟକ୍ଷ : ପୁଲିସ୍ ? ପୁଲିସ୍ ଜୋଇଁଟେ ହେଲେ ମୋତେ ରାଜନୀତିରେ ଅନେକ ସାହାଯ୍ୟ କରନ୍ତା ।

ଅସୀମା : ଚାଲୁ ନାହାନ୍ତି ।

ଅଧ୍ୟକ୍ଷ : ଆସ(ସମସ୍ତେ ଯାଆନ୍ତି)

(Right Zoneରେ ବାପା)

ବାପା : (ଗୀତ) ପୁଅ ମୋର ହାବିଲିଦାର

ଦିନରାତି ଧରୁଛି ଚୋର

ଯେଉଁ ଲୋକ ତାକୁ ଜୋଇଁ କରିନବ

ସିଏ ପରା ଏକା ସମଝ୍‌ଦାର

ପୁଅ ମୋର ହାବିଲିଦାର ।

ଆସ ଆସ ଝିଅର ମାତା

ଆମ୍ଭେ ଅଟୁ ବର କରତା

କିଛି ଦବ ନାହିଁ ଟଙ୍କା ଗଣିଦବ

ଝିଅ ତୁମ ନିତି ଇଲିଶି ଖାଇବ

ପାଇବେନି କେହି ବାସନା ତା'ର

ପୁଅ ମୋର ହାବିଲିଦାର ।

ଅଧ୍ୟକ୍ଷା : ଓ ହୋ ତାଙ୍କୁ ମନା କର ଅସୀମା ! ଏତେ ପାଟିରେ ଦର କଷିଲେ ଲୋକେ ଜମିଯିବେ । ମୋତେ ନିନ୍ଦା କରିବେ ।

ଅସୀମା : ଓ ମଉସା ! ଟିକେ ରୁହ, ଏତେ ପାଟି କିଆଁ ।

ବାପା : ଆଉ, ମୁଁ କ'ଣ ଝିଅର ବାପା ହେଇଛି କି ପାଟି କରିବିନି ।

ପାଟି କରି ହାଟ କମ୍ପେଇ ଦେବି ।

ଅସୀମା : ଓ ହୋ ପାଟିକଲେ ଦର ଖସିଯିବ । ଚୁପ୍‌ଚୁପ୍ ଦରକଷି ଦର ବଢ଼ାଅ ।

ବାପା : ହଉ ହେଲା ଦର ଯେବେ ବଢ଼ିବ ଚୁପ୍ ଚୁପ୍ ହଉ

(ଅଧ୍ୟକ୍ଷା ଓ ବାପା ଚୁପ୍ ଚୁପ୍ କଥା ହେଲେ)

(ସୀମା ଅସୀମା ଆଗେଇ ଗଲେ)

(ହଠାତ୍ ଅଧ୍ୟକ୍ଷା ଓ ବାପା ହସି ଉଠିଲେ)

ଅଧ୍ୟକ୍ଷା : ବାଃ ବାଃ ସମୁଦି ! ତମ କଥାର ଜବାବ ନାହିଁ ।

ବାପା : ମୁଁ ପରା ତମରି ଭଳି ସମୁଦୁଣୀ ଖୋଜୁଥିଲି ।

ଅଧ୍ୟକ୍ଷା : ପାଇଗଲ ତ ?

ବାପା : ପାଇଗଲି ମାନେ, ଆହୁରି ପଚାରୁଛ ଏମିତି ମନଲାଖି ସମୁଦୁଣି କାହାକୁ ମିଳିବ ।

ଅଧ୍ୟକ୍ଷା : ତା'ହେଲେ ଯିବା ।

ବାପା : ଯିବା ମାନେ ଚାଲନା(ଦୁହେଁ ଗଲେ)

(ଅସୀମା ସୀମା ଫେରିଲେ)

ଅସୀମା : ଏବେ କହ ସୀମା ହାଟଯାକ ତ ବୁଲିଲୁ କୋଉଠି ପସନ୍ଦ କଲୁ ?

ସୀମା : ହାଟଯାକ ବୁଲିଆସି ମୁଁ ଗୋଟେ ସିଦ୍ଧାନ୍ତ ପାଇଗଲି ।

ଅସୀମା : ସିଦ୍ଧାନ୍ତ ?

ସୀମା : ହଁ, ବିବାହ ଆମର ଲକ୍ଷ୍ୟ ନୁହେଁ ।

ବେପାର ଆମର ଜୀବନ ନୁହେଁ

ପ୍ରତିଭା ଆମର ଭୂଷଣ

ଜ୍ଞାନ ଆମର ଗାରିମା ।

ତେଣୁ ଏ ଶଙ୍ଖା, ଶାଢ଼ୀ ସିନ୍ଦୂର ସର୍ବସ୍ୱ ସମାଜରୁ ନିଜକୁ ଉଦ୍ଧାର କରି ଏକ ବୈପ୍ଳବିକ ଜୀବନ ପାଇଁ ମଶାଲ ଧରିବା ଆମର ଲକ୍ଷ୍ୟ ।

ଅସୀମା : ତୁ କ'ଣ ?

ସୀମା : କଣ୍ଢେଇଟେ କିଣିନେଇ ବାପା ବୋଉଙ୍କ ଆଲମାରୀରେ ସଜାଇବା ଅପେକ୍ଷା ନ ଖେଳିବା ଭଲ ।

(ଏହି ସମୟରେ ଜଣେ ଯୁବକ ଦୌଡ଼ି ଆସେ)

ଯୁବକ : ଦେଖ ଦେଖ ମୋତେ କେମିତି ଏମାନେ ଗୋଡ଼େଇଛନ୍ତି ।

ଅସୀମା : ହଇଓ ତମକୁ ବାରମ୍ବାର ମନାକଲି ତମେ ଆଉ ହାଟକୁ ଆସିବନି । ତମର ଗ୍ଳାନି ନାହିଁ ଆ ଚାଳିରେ ତା' ଚାଳିରେ ପଶିବ ଲୋକେ ଗାଳି ଦେବନି ।

ଯୁବକ : ମୋପାଇଁ ତ ତମେ ଚାଳି ଖଣ୍ଡେ ଦଉନ ?

ଅସୀମା : କେମିତି ଦେବି କହିଲ ? ତମେ ତ ଦର କହୁନ ।

ଯୁବକ : ମୁଁ ତ ଅନେକଥର କହିଛି ମୁଁ ଜଣେ ମଣିଷ । ପଣ୍ୟଦ୍ରବ୍ୟ ନୁହେଁ ଯେ ଦାମ୍ ଦେଇ ଯିଏ ସିଏ କିଣିନବ । (ସୀମା ଚାହେଁ)

ଅସୀମା : ସମାଜ ତ ସେ କଥା କହୁନି ।

ଯୁବକ : ଏ ସମାଜ ମଣିଷର ନା ଉପାଧିର ?

ଅସୀମା : ମଣିଷର

ଯୁବକ : ତା'ହେଲେ ଉପାଧି ଅନୁସାରେ ଦର କଷୁଛ କାହିଁକି ? ଉପାଧିକୁ ତମେ ଏଠି ହାଟରେ ବସି ନିଲାମ କର କିନ୍ତୁ ନିଜର ମାନବିକତାକୁ ଅର୍ଥ ହାତକୁ ଟେକି ଦିଅନି । ଏ ବିବାହ ବଜାରରେ ମୁଁ ନିଜକୁ ନିଲାମ କରୁ ନଥିବାରୁ ମୋଟା ଅଙ୍କର ଯୌତୁକ ନେଉ ନଥିବାରୁ ମୋତେ ଏମାନେ ଅସାମାଜିକ କହି ଏ ହାଟରୁ ତଡ଼ି ଦେଉଛନ୍ତି ।

ସୀମା : ଯିଏ ସତ କଥା କହେ ଏ ସମାଜ ତାକୁ ପାଗଳ ଛଡ଼ା କ'ଣ କହିବ ?

ଯୁବକ : ପାଗଳ କହିଲେ କହୁ ମୁଁ କିନ୍ତୁ ମଣିଷ ଆଉ ମୁଁ ଅର୍ଥ ହାତରେ ନିଜକୁ ବିକି ଦେଇ ପାରିବିନି ।

ସୀମା : କିନ୍ତୁ ଆପଣଙ୍କୁ ନିଲାମ ହେବାକୁ ପଡ଼ିବ ।

ଯୁବକ : ମାନେ ?

ସୀମା : ହୁଏତ ଅର୍ଥ ଅବା ବସ୍ତୁଭିତ୍ତିକ ନିଲାମ ନ ହୋଇପାରେ ?

ଯୁବକ : ଆଉ ?

ସୀମା : ଅସୀମା ! ଫୁଲହାରଟେ ଦେଇପାରିବୁ ।

ଅସୀମା : ଫୁଲହାର ? ଓ ମୋ ବେଗ୍‌ରେ ସବୁବେଳେ ଥାଏ ।

ସୀମା : ମୁଁ ଆପଣଙ୍କୁ (ଦିଏ) କେବଳ ଏହାରଟା ବିନିମୟରେ ନିଲାମ କରିନେଲି (ଫୁଲହାର ପିନ୍ଧାଇ ଦିଏ) ।

ଯୁବକ : କିନ୍ତୁ

ଅସୀମା : ଆରେ ! ଆସ ହେ ହାଟବାସୀ ଆସ ଦୌଡ଼ିଆର ନାଚ ହବ ଗୀତ ହବ ଏ ହାଟରେ ଆଉ ଅର୍ଥ ପାଇଁ ବର ନିଲାମ ହବନି । ଏ ହାଟ ଜୀବନର ହାଟ ଏଠି ଜୀବନ ପାଇଁ ସାଥୀ ମିଳେ । ହୃଦୟ ବଦଳରେ· ହୃଦୟ ମିଳେ । ଯାହାକୁ ଅର୍ଥ ସଂପଦ ବଳରେ କିଣି ହୁଏନି ।

ଗୋଟେ ସୁନ୍ଦର Music ଛନ୍ଦରେ ଅସୀମା ନାଚିନାଚି ବରକନ୍ୟାଙ୍କୁ ନେଇଯାଏ ।

– ଯବନିକା –

## ଏଥିରେ ଥିବା ଚରିତ୍ରମାନେ

- କମଳା
- ସନିଆ
- ଲକ୍ଷ୍ମୀ
- ଘନିଆ
- ପ୍ରସନ୍ନ

## ପ୍ରଥମ ଦୃଶ୍ୟ

(ସମୟ ସକାଳ, ସନିଆ ରିକ୍ସାବାଲାର ଘର ଅଗଣା, ତା'
ସ୍ତ୍ରୀ କମଳାଘର ଓଳଉ ଥାଏ । ଭିତରୁ ସନିଆ ଡାକେ)

ସନିଆ : କମଳା କମଳା ଏ କମଳା

କମଳା : ମଲା, ଟିକେ କଥାକୁ କମଳା, ଯୋଉ ତ ନାଁ ଛେପ ପକାଇବାକୁ ଇଛା ହବନି । ସେମିତି ନାଁ ହୋଇଥିଲେ ଦିନରାତି ଖାଲି ଜପି ହୁଅନ୍ତେ । ଯାଉଛି ଯାଉଛି ।

ସନିଆ : (ଆସି) କିଲୋ ତୋତେ କ'ଣ ଶୁଭୁନି ମୁଁ ପରା ଘଣ୍ଟେ ହେଲା କମଳା କମଳା ରଡ଼ି ଛାଡୁଛି ।

କମଳା : କମଳା, ଯୋଉ ତ ନାଁ ସେଥିରେ ଏତେ ସୁହାଗ ।

ସନିଆ : ଆଉ, ସେ କଥା କହିବୁନି । କମଳା ପରା ଲକ୍ଷ୍ମୀଙ୍କ ନାମ ମୁଁ ଆହୁରି ତୋ କପାଳକୁ ବିଷ୍ଣୁ ହୋଇପାରିଲିନି ହଉ ହେଲେ କମଳାକୁ ତ ପାଇଛି ।

କମଳା : ଯେ ମୁଁ ଗୋଟେ କଥା କହିବି ମାନିବ ।

ସନିଆ : କହୁନୁ, ଯାହା କହୁଛୁ ଜଲ୍‌ଦୀ କହ, କ'ଣ ଶାଢ଼ୀ ନା ଚୁଡ଼ି ।

କମଳା : ନାଇଁମ, ମୁଁ କ'ଣ କହୁଥିଲି କି... ଆମ ମାଡ଼ାମ

ସନିଆ : ମାଡ଼ାମ... ସେଟା ଫେର୍ କିଏ ?

କମଳା : ବାବୁଆଣୀ ମ ।

ସନିଆ : ହଁ କ'ଣ ହେଲା ?

କମଳା : ସେ ବହୁତ ପାଠ ପଢ଼ିଛନ୍ତି ଇଂଲିଶି ବି ପଢ଼ିଛନ୍ତି ।

ସନିଆ : ହଁ କଲେଜରେ ପଢ଼ଉଛନ୍ତି ଯେତେବେଳେ, ଇଂଲିଶି, ହିନ୍ଦୀ, ତେଲୁଗୁ ସବୁ ପଢ଼ିଥିବେ ।

କମଳା : ତାଙ୍କୁ ପଚାରିଲି କମଳାକୁ ଇଂଲିଶିରେ କ'ଣ କହନ୍ତି ସେ କହିଲେ କମଳା କମଳାକୁ ଅରେଞ୍ଜ କହନ୍ତି ।

ସନିଆ : କ'ଣ କହନ୍ତି କ'ଣ କହନ୍ତି ।

କମଳା : ଅରେଞ୍ଜ

ସନିଆ : ଅରେଞ୍ଜ ?

କମଳା : ହଁ, ଏ କମଳା ନାଁଟା ନିହାତି ଖରାପ ଲାଗୁଛି । ତମେ ମୋତେ ଅରେଞ୍ଜ ବୋଲି ଡାକନ୍ତନି ।

ସନିଆ : କ'ଣ କହିଲୁ, ଅରେଞ୍ଜ ଡାକିବି, କମଳା ହେଉଛି ଲକ୍ଷ୍ମୀ, କୌଣସି ମାଇପି ଲୋକକୁ ଲକ୍ଷ୍ମୀ ବୋଲି କହିଦେଲେ ସେ ଖୁସିରେ ପାଗଳି ହୋଇଯାଆନ୍ତି, ଆଉ ତୁ କ'ଣ ନା...ଛି ଛି.... ହବନି ହବନି ଶଳା କେଡ଼େ କଷ୍ଟରେ କମଳାକୁ ପାଇଛି ଅଣ୍ଟିରେ ଦି'ପଇସା ହଉଛି କ'ଣନା କମଳାକୁ ଛାଡ଼ି କ'ଣ କହିଲୁ ସେଟା ।

କମଳା : ଅରେଞ୍ଜ

ସନିଆ : ସେ ଅରେଞ୍ଜ ଫରେଞ୍ଜ କଥା ଛାଡ଼, ମୋତେ ମୋ କୁରୁତାଟା ଦେ ମୁଁ ଯାଏ । ପିଲାମାନେ ଇସ୍କୁଲ୍ ଯିବେ।

କମଳା : ସାର୍ଟ ବୋଲି କହିପାରୁନ କ'ଣ ନା କୁରୁତା ।

ସନିଆ : ଆଲୋ ସାଇବ ହାକିମମାନେ ସିନା ସାର୍ଟ ପିନ୍ଧନ୍ତି ସନିଆଟା ତ ରିକ୍ସାବାଲା ତା' ଫାଟିକୁ କୁରୁତାଟା କେମିତି ମାନିବ ସାର୍ଟ ମାନିବନି । ତୁ ସିଆଡ଼କୁ ମନ ଦେନି ଭଗବାନ ଆମକୁ ଯେତିକି ଦେଇଛନ୍ତି ସେତିକିରେ ଖୁସିରେ ରହ । ଯା ମୋ କୁରୁତାଟା ଆଣ । (କମଳା ଯିବାକୁ ବାହାରେ ତା' ଅଣ୍ଟିରେ ଥିବା ମୋବାଇଲ୍ ରିଂ ହୁଏ ।

କମଳା : (ଖୁସିରେ ମୋବାଇଲ୍ ରିଂ କରେ) ହାଲୋ

ସନିଆ : (ଚମକି) ମୋବାଇଲ୍ ! ୟାକୁ କିଏ ଦେଲା ।

କମଳା : ହଁ ମାଡ଼ାମ୍ ମୁଁ କହୁଛି.... ମୁଁ... ମୁଁ ଅରେଞ୍ଜ କହୁଛି... ବୁଝିପାରୁ ନାହାନ୍ତି ? ଅରେଞ୍ଜ ଅରେଞ୍ଜ କମଳା କହୁଛି କମଳା...(କହି କହି ଭିତରକୁ ଯାଏ)

ସନିଆ : ଇଏ ଯାହା କଲାଣି ମୋ ଘରକୁ ଲକ୍ଷୀ ଛଡ଼େଇଦବ (କୁରୁତା ନେଇ ଆସେ କମଳା)

କମଳା : ନିଅ ତମ

ସନିଆ : (ନେଇ) କୁରୁତା; କୁରୁତା ନେବି ପଛରେ ମୋତେ ଆଗ କହ ସେ ମୋବିଲ କୋଉଠୁ ଆଣିଲୁ ?

କମଳା : ମୁଁ ତମ ପଇସାରୁ କିଣିନି

ସନିଆ : ଆଉ ତୋ ବାପଘର ଦେଇଛନ୍ତି ।

କମଳା : କି ବାପଘର କାହିଁକି ଦେବେ, ମାଡ଼ାମ୍ ଦେଇଛନ୍ତି

ସନିଆ : ମାଡ଼ାମ୍ ଦେଇଛନ୍ତି, କ'ଣ ଖାଲିରେ ?

କମଳା : ତାଙ୍କ ଘରେ ଏଟା ପଡ଼ିଥିଲା

ସନିଆ : ତୁ ମାଗିଦେଲୁ ସେ ଦେଇଦେଲେ

କମଳା : ମଲା, ତମର ସବୁବେଳେ ଓଲଟା କଥା ।

ସନିଆ : ହଁ ମୋର ତ ଓଲଟା କଥା ତୋ ସିଧା କଥାରେ ସେ କାହିଁକି ଦେଇଛନ୍ତି କହନା – ସେ ଯେତେବେଳେ ଇଚ୍ଛା କରିବେ ତୋତେ ସେତେବେଳେ ଡାକିଦେବେ ହୁକୁମ କରି ପାରିବେ ବୁଝିଲୁ । ହୁଁ ଫେସନ୍ ଦେଖ ହଉ ହେଲା । ମୁଁ ଆସେ(ଯାଉଥାଏ ଭିତରୁ ଲକ୍ଷ୍ମୀ ଆସେ)

କମଳା : ବାପା ଯାଉଛନ୍ତି ଯେ ।

ଲକ୍ଷ୍ମୀ : ବାପା ବାଏ ।

ସନିଆ : (ପଛକୁ ଚାହେଁ ରାଗିକରି ଫେରେ) କ'ଣ କହିଲୁ ବାପା ବେୟ ! ଏୟ ତୋର ତ କମ୍ ସାହସ ନୁହେଁ ବାପକୁ ବାପା ବେୟ କହୁଛୁ । ବେ ମୁଁ ମୋ ବାପକୁ ବା ଡାକିଲା ପରେ ପାଟିରୁ ପା ବାହାରେନି । ତୁ କ'ଣନା, ତୁ ଏଇ ପାଠପଢୁଛୁ ଏଁ ନା ଆଉ ପାଠପଢ଼ିବା ଦରକାର ନାହିଁ ତୋର ଆଜିଠୁ ଆଉ ଇସ୍କୁଲ୍ ଯିବା ଦରକାର ନାହିଁ ମୁଁ ଯାଏ ମାଷ୍ଟରଙ୍କୁ ପଚାରେ (ଯାଏ)

ଲକ୍ଷ୍ମୀ : ବାପା ବାପା, ମୁଁ କହୁଥିଲି ନା ମାଆ ବାପା ରାଗିବେ ।

କମଳା : ହଁ ତୋ ବାପକୁ ରାଗ ଛଡ଼ା ଆଉ କ'ଣ ଆସେ କି ?

ଲକ୍ଷ୍ମୀ : କାଲି ଆମ ସ୍କୁଲ୍‌ରେ ନାଚ କଂପିଟିସନ୍। ମୁଁ ଯଦି ନ ଯିବି ନାଚିବି କେମିତି ?

କମଳା : କିଏ କହିଲା ତୁ ଯିବୁନି ବୋଲି ଆଲୋ କେବଳ ତୁ ନାଚିବୁ ବୋଲି ପରା ମୁଁ ଲୁସି ମାଆଠୁ କହି ଏ ମୋବାଇଲ୍‌ଟା ଆଣିଛି ଆଉ ଯୋଉ ଗୀତ ଗାଇ ଲୁସି ତାଙ୍କ ସ୍କୁଲ୍‌ରେ ଫାଷ୍ଟ ହୋଇଥିଲା ସେ ଗୀତ ଏଥିରେ ଅଛି ତୁ, ଗୋଟେ କାମ କର ତୁ ଏ ଗୀତ ବଜେଇ ପ୍ରାକ୍ଟିସ୍ କର କାଲି ସ୍କୁଲ୍‌ରେ ନାଚିଦବୁ ।

ଲକ୍ଷ୍ମୀ : ହଁ ହଁ ମା ବଢ଼ିଆ ହବ ।

କମଳା : ହଁ ଲକ୍ଷ୍ମୀ ଆଉ ଗୋଟେ କଥା ତୁ ଏତେଦିନ ହେଲା ସ୍କୁଲ୍ ଗଲୁଣି ତୋ ପାଟିରୁ ପଦେ ଇଂଲିଶି ବାହାରିଲାନି ।

ଲକ୍ଷ୍ମୀ : ମଲା କାଲି ସନ୍ଧ୍ୟା ବେଳେ ମୁଁ ପଢୁ ନଥିଲି cat ମାନେ ବିଲେଇ, ratମାନେ ମୂଷା ।

କମଳା : ବିଲେଇକୁ cat କହିଦଉଛୁ ମୂଷାକୁ ରେଟ୍ କହି ଦଉଛୁ, ଆଉ ମାଆକୁ ?

କମଳା : ମୁଁ କ'ଣ କହନ୍ତିନି ଦିଦି ପରା କହିଛନ୍ତି ।

ମାଆଠୁ ମଧୁର ଡାକ ଜଗତରେ ନାହିଁ ।

ମାଆର ମମତା ପରି ଆଉ କିଛି ନାହିଁ ।

କମଳା : ସେ କଥା ନୁହେଁ, ମାଆକୁ ଇଂଲିଶ୍‌ରେ କ'ଣ କହନ୍ତି ତୁ ଜାଣିନୁ ।

ଲକ୍ଷ୍ମୀ : ମାଆକୁ ଇଂଲିଶ୍‌ରେ ମଦର କହନ୍ତି ।

କମଳା : ବାସ୍ ତୁ ଯଦି ମୋତେ ମଦର ମଦର ଡାକନ୍ତୁ ନା ମୁଁ ତୋତେ ଲକ୍ଷ୍ମୀ ଡାକନ୍ତିନି ।

ଲକ୍ଷ୍ମୀ : ଆଉ

କମଳା : ଛି ! ଲକ୍ଷ୍ମୀଟା ଗାଉଁଲି ନାମ । ମୁଁ ତୋତେ ଲକି ଡାକନ୍ତି ।

ଲକ୍ଷ୍ମୀ : ଲକି, (ହସିଲା)

କମଳା : କିଲୋ ! କଅଣ ହେଲା ?

ଲକ୍ଷ୍ମୀ : ଆମ ସ୍କୁଲ୍‌ରେ ଯୋଉ ଭାତ ରନ୍ଧାଯାଏ ତା'ର ପେଜ ଖାଇବା ପାଇଁ ବୁଲାକୁକୁରଟେ ବୁଲୁଥାଏ ତାକୁ ସମସ୍ତେ ଲକି ଲକି ଡାକନ୍ତି । ଲକି 'ତୁ' ଡାକିଦେଲେ ସେ ଦୌଡ଼ିଆସେ - ଆଉ ସମସ୍ତେ ଯେତେବେଳେ ଜାଣିବେ ମୋ ନାଁ ଲକି ସମସ୍ତେ ମୋତେ ଏମିତି ହାତ ଦେଖେଇ ଲକି ତୁ ଲକି ତୁ ଡାକି ଖଣ୍ଡିଆ ବିସ୍କୁଟ୍ ଫୋପାଡ଼ିବେ । ନା ବାବା ନା ।

କମଳା : ହଁ ବାପ ଯେମିତି ଝିଅ ସେମିତି - ବେଂଗ ପାଟିରେ ଘିଅ ପଶିବ କେମିତି ?

ଲକ୍ଷ୍ମୀ : ହଉ ହେଲା, ଆମେ ଆମର ବେଂଗ, ତୁ ଗୀତ ବଜେଇଲୁ ମୁଁ ଟିକିଏ ନାଚି ଦିଏ ।

କମଳା : କି, ମୋବାଇଲ୍ କାହିଁକି ଦେବି ? ତୋ ବାପକୁ ମାଗ ।

ଲକ୍ଷ୍ମୀ : ଓ ହ ମା' ଦେ

କମଳା : ନା ଜମାରୁ ଦେବିନି, ମୋ କଥା ମାନିବୁ ଯଦି ଦେବି ।

ଲକ୍ଷ୍ମୀ : ହଁ ମାନିବି ।

କମଳା : ତୋ ନାଁ କ'ଣ ହବ ?

ଲକ୍ଷ୍ମୀ : ହଉ ହେଲା ଲକି

କମଳା : ମୋତେ କ'ଣ ଡାକିବୁ ?

ଲକ୍ଷ୍ମୀ : ମାଆ

କମଳା : ନା, ମାଆକୁ ଇଂଲିଶ୍‌ରେ କ'ଣ କହନ୍ତି ?

ଲକ୍ଷ୍ମୀ : ମଦର

କମଳା : ବେଶ୍ ମୋତେ ମଦର୍ ଡାକିବୁ ।

ଲକ୍ଷ୍ମୀ : ମାଆକୁ ସିନା ମଦର କହନ୍ତି ହେଲେ ମାମି ବୋଲି ଡାକୁ

କମଳା : ହଁ ଲୁସି ତା' ମାଆକୁ ତ ମାମି ବୋଲି ଡାକେ

ଲକ୍ଷ୍ମୀ : ମୁଁ ବି ତୋତେ ମାମି ବୋଲି ଡାକିବି

କମଳା : ଡାକ୍

ଲକ୍ଷ୍ମୀ : ମାମି ମୋବାଇଲ୍ ବଜା (କମଳା ବଜାଏ)

କମଳା : (ମୋବାଇଲ ବଜାଏ, ଲକ୍ଷ୍ମୀ ନାଚେ ତା' ସହିତ କମଳା ବି ନାଚି ଦିଏ । ଶିଖାଏ, କିନ୍ତୁ ସମୟ ବିତିଯାଏ ବାହାରୁ ଡାକି ଡାକି ଆସେ ଘନିଆ)

ଘନିଆ : ସନିଆ ଆରେ ଏ ସନିଆ ଘରେ ଅଛୁନା ନାହିଁ ?

କମଳା : ଆରେ ଘନିଆଇ ଏତେଦିନ ପରେ ମନେପଡ଼ିଲା ।

ଘନିଆ : କିଲୋ ଲକ୍ଷ୍ମୀ

କମଳା : ଉଁ ହୁଁ, ସିଏ ଆଉ ଲକ୍ଷ୍ମୀ ନୁହେଁ, ଇଂଲିଶ୍ ପଢ଼ିଲାଣିତ ତା' ନାଁ ଆମେ ଲକି ଦେଇ ଦେଇଛୁ ।

ଘନିଆ : ଆଚ୍ଛା !

ଲକ୍ଷ୍ମୀ : ନା ମାମୁଁ

କମଳା : ଚୁପ୍ ! ମାମୁଁ କ'ଣ କହୁଛୁ, ମାମୁଁଙ୍କୁ ଇଂଲିଶ୍‌ରେ କ'ଣ ବୋଲି କହନ୍ତି ?

ଲକ୍ଷ୍ମୀ : ଅଂକଲ୍ ।

ଘନିଆ : କ'ଣ କହିଲୁ ଅଂକଲ ।

କମଳା : ବେଶ୍ ଆଜିଠୁ ତୁ ଘନିଆ ମାମୁଁଙ୍କୁ ଅଂକଲ ଡାକିବୁ ।

ଲକ୍ଷ୍ମୀ : ହଁ ଘନିଆ ଅଂକଲ

ଲକ୍ଷ୍ମୀ : କମଳା, ମୁଁ ତୋର ବି ଅପରାଧ କଲି । ତୁ ମୋତେ ଏମିତି ପର କରିଦଉଛୁ । ମୁଁ ତୋର ଧରମଭାଇ ହୋଇପାରେ ତା' ବୋଲି ତୁ ମୋତେ ଚାକର ବନେଇ ଦବୁ । ମୁଁ ତୋ'ଠୁ ଏ ଆଶା କରି ନଥିଲି ।

ଲକ୍ଷ୍ମୀ : ଅଂକଲ୍ ।

ଘନିଆ : ତୁ ଶେଷରେ ମୋତେ ଅଂକଲ ଡାକିଲୁ ।

କମଳା : ଘନିଆ'ଇ ଏ କ'ଣ କହୁଛୁ, ତମକୁ ଚାକର କିଏ କହିଲା ?

ଘନିଆ : ତୁ ତୋ ଝିଅ

କମଳା : ମୁଁ ତ କିଛି କହିନି, ଝିଅ ତ ଅଂକଲ କହିଲା ।

ଘନିଆ : ସେଇ ତ ଅଂକଲ୍, ଦାମବାବୁ ଘର ପିଲାମାନେ ତାଙ୍କ ଚାକର ଟୋକାକୁ ଅଂକଲ ଡାକନ୍ତି । ମୁଁ କ'ଣ ତମ ଚାକର ? ପାଠ ପଢ଼ିଲୁ ବୋଲି ମାମୁକୁ ଚାକର ବନେଇ ଦବୁ ।

କମଳା : ଓ ଏଇ କଥା ।

ଲକ୍ଷ୍ମୀ : ନାଇଁ ମାମୁ ମୁଁ ତମକୁ ମାମୁ ଡାକିବି ।

ଘନିଆ : ବାସ୍ ଏଇ ଧର ତୋ କୁର୍‌କୁରେ ।

ଲକ୍ଷ୍ମୀ : ଘନିଆ ମାମୁ ବଢ଼ିଆ ମାମୁ ।(ଡେଇଁ ଡେଇଁ ଭିତରକୁ ଯାଏ)

ଘନିଆ : ଆଉ ?

କମଳା : ହଉ ଘନିଆ'ଇ ବସ୍, ମୁଁ ଖାଇବାର ବାଢୁଛି ।

ଘନିଆ : ନାଇଁ ନାଇଁ ମୋର ବସିବାକୁ ସମୟ ନାହିଁ । ବାହାଘର ପରା ମୁଣ୍ଡ ଉପରେ ।

କମଳା : ବାହାଘର, କାହାର ?

ଘନିଆ : ଆମ ମଧୁଆର ହଠାତ୍ କି ନା ଠିକ୍ ହେଇଗଲା । ମୁଁ କାର୍ଡ଼ ବାଣ୍ଟି ବାହାରିଛି । ସନିଆ କାହିଁ ?

କମଳା : ସିଏ କ'ଣ ଘରେ ଥାଆନ୍ତି ?

ଘନିଆ : ଦେଖ୍ ବାହାଘରକୁ ନ ଗଲେ କିନ୍ତୁ ଭଲ କଥା ହବନି ।

କମଳା : ନା ନା ମଧୁଆର ବାହାଘର ଆମେ ଯିବାନି ?

ଘନିଆ : (କାର୍ଡ଼ ନ ପାଇ) ଦେଖ୍‌ନା କୋଉଟା ତମ କାର୍ଡ଼, ମୁଁ ଇଂଲିଶ୍ ପଢ଼ି ପାରେନି । ସବୁଗୁଡ଼ା ଇଂଲିଶ୍‌ରେ ଲେଖିଛି ।

କମଳା : (ଦେଖି) ମଲା, ମୋର ସେ ଭାଗ୍ୟ କାହିଁ । ମୁଁ ଓଡ଼ିଆ ଭଲକି ପଢ଼ିପାରେ ନାହିଁ ଆଉ ଇଂଲିଶ୍ ?

ଘନିଆ : ଆଉ ତୋ ଝିଅ ଲକ୍ଷ୍ମୀ ।

କମଳା : ଲକ୍ଷ୍ମୀ ନା ନା ଲକି ଲକି (ଆସେ)

ଘନିଆ : ଆଲୋ ପଢ଼ନା ଏଟା କାହା କାର୍ଡ଼ ।

ଲକ୍ଷ୍ମୀ : ମୁଁ ଏଗୁଡ଼ା ପଢ଼ି ଶିଖିନି ।

କମଳା : ଆଉ କ'ଣ ପଢୁଛୁ ଛେନାଗୁଡ଼ ଯା' ।

ଘନିଆ : ହଉ ଏଇ ଖାଲି କାର୍ଡ଼ ଖଣ୍ଡେ ରଖିଥା ।

କମଳା : ହେଲା, ହେଲେ ବାହାଘର କେବେ, କୋଉଠି ?

ଘନିଆ : ସବୁ କାର୍ଡ଼ରେ ଲେଖା ଅଛି । ଏଇ ଯୋଉ ଆଗଛକ ରାଧାକୃଷ୍ଣ ମନ୍ଦିର ସେଇଠି ପରା ବାହାଘର ହବ ।

କମଳା : ଆମ ଏଇ ରାଧାକୃଷ୍ଣ ମନ୍ଦିର । ସେଠିକି ତ ମୁଁ ନିତି ଯାଏ, ଏବେ ତ ଯିବି ।

ଘନିଆ : ତୋର ତାଙ୍କ ସହ ଜଣାଶୁଣା ଅଛିନା ।

କମଳା : ଅଛି ମାନେ ଖୁବ୍ ଭଲକି ଅଛି ।

ଘନିଆ : ଟିକିଏ ଚାଲନ୍ତୁ କି ମୋ ସହିତ, କିଛି ଏଡ଼୍‌ଭାନ୍ସ ଦେଇ ଦିଅନ୍ତି । ଆଉ ତାଙ୍କ ସିଷ୍ଟମ ବିଷୟରେ ବୁଝି ଥାନ୍ତେ ।

କମଳା : ରୁହ, ମୁଁ ଟିକିଏ ଡ୍ରେସ୍ ବଦଳେଇ ଦିଏ ଯିବା ।

ଘନିଆ : ତୋ କାର୍ଡ଼ଟା ରଖିଦେ ।

କମଳା : ଲକ୍ଷ୍ମୀ ଲକ୍ଷ୍ମୀ ଫେର୍ ଭୁଲ୍ ହେଇଗଲା ଲକି ଲକି(ଆସେ)

ଲକ୍ଷ୍ମୀ : କ'ଣ ହେଲା ?

କମଳା : ତୁ ଏବେ ଘରେ ଥା । ତୋ ବାପା ମାନେ ବାପାଙ୍କୁ

ଲକ୍ଷ୍ମୀ : ଇଂଲିଶ୍‌ରେ ଡାଡି କହନ୍ତି

କମଳା : ତୁ ବି ତୋ ବାପାଙ୍କୁ ଡାଡି କହିବୁ, କହିବୁ ଡାଡି ଡାଡି ମାମୁ ସହିତ ମାମି ମନ୍ଦିର ପଳେଇଲେ । ତାଙ୍କ ବାହା କାର୍ଡ଼ ଦେଇଛନ୍ତି । ଦେଇଦେବୁ ବୁଝିଲୁ । ମୁଁ ଆସେ ।

ଲକ୍ଷ୍ମୀ : (କାର୍ଡ଼ ଦେଇ) ମାମୁଁ ସହିତ ମାମି ମନ୍ଦିର ପଳେଇଚି । ତାଙ୍କ ବାହାଘର । ମୋତେ ମୋବାଇଲ୍‌ଟା ଦେ । ମୁଁ ନାଚ ଶିଖେ । (ଦିଏ ମ୍ୟୁଜିକ୍ ଆରମ୍ଭ ହୁଏ ।)

**- ଅନ୍ଧାର -**

# ଶେଷଦୃଶ୍ୟ

(ସନିଆ ଡାକି ଡାକି ଆସେ)

ସନିଆ : କମଳା ! କମଳା ! ଆଲୋ କମଳି । ଏଁ କେହି କୁଆଡ଼େ ନାହାନ୍ତି । କୁଆଡ଼େ ଗଲେ ? (ଲକ୍ଷ୍ମୀ ଆସେ)

ଲକ୍ଷ୍ମୀ : ବାପା ! ବାପା ! ନାଇଁ ନାଇଁ ଭୁଲ୍ ହେଇଗଲା ଡାଡି ଡାଡି

ସନିଆ : (ଏଣେ ତେଣେ ଚାହିଁ) କାହାକୁ ଡାକୁଛୁ ।

ଲକ୍ଷ୍ମୀ : ଏଠି ଆଉ କିଏ ଅଛି କି, ତମକୁ ତମକୁ

ସନିଆ : ମୋତେ ?

ଲକ୍ଷ୍ମୀ : ହଁ ତମେ, ତମେ ମୋ ବାପା ନୁହଁ ଡାଡି

ସନିଆ : ମୁଁ ତୋ ବାପ ନୁହେଁ ଦାଦୀ, କିଏ କହିଲା ।

ଲକ୍ଷ୍ମୀ : କିଏ କହିଲା ? ମାମି ମାମି

ସନିଆ : ମା...ମି...କୋଉ ମାମି

ଲକ୍ଷ୍ମୀ : ତମ କମଳି କମଳି, ସିଏ ମୋ ମାଆ ନୁହେଁ ମାମି ଆଉ ତମେ ମୋ ବାପା ନୁହଁ ଡାଡି ।

ସନିଆ : କମଳି କହିଲା, କମଳା କମଳା (ଭିତରକୁ ଯାଉଥାଏ)

ଲକ୍ଷ୍ମୀ : ସିଏ କ'ଣ ଘରେ ଅଛି ?

ସନିଆ : ଆଉ ?

ଲକ୍ଷ୍ମୀ : ଘନିଆ ମାମୁ ଆସିଥିଲେ ମମିକୁ ନେଇ ମନ୍ଦିର ଯାଇଛନ୍ତି । ତାଙ୍କର ପରା ବାହାଘର ଏଇ କାର୍ଡ଼ ବି ଦେଇ ଯାଇଛନ୍ତି ।

ସନିଆ : (କାର୍ଡ଼ ଧରି) କ'ଣ କହିଲୁ, ମାମୁଁ ଆସିଥିଲା ମାମିକୁ ନେଇ ମନ୍ଦିର ଯାଇଛନ୍ତି । ତାଙ୍କର ବାହାଘର ତୋ ହାତରେ କାର୍ଡ଼ ଦେଇ କହିଗଲା, ମୁଁ ତୋ ବାପ ନୁହେଁ ଦାଦୀ ଶଳା ଏଇ ଲାଜ ସେ ଘନିଆଟାକୁ ଧରମଭାଇ କିଛି କାହିଁ ଗଲା କାହିଁଗଲା ମୋ କଟୁରୀ ସେ ଶଳା ଘନିଆକୁ ଆଜି ହାଣି ଦେମି କାଟି ଦେମି । ମାରିଦେମି(ଭିତରୁ କଟୁରି ଆଣିଲା)

ଲକ୍ଷ୍ମୀ : ଡାଡି

ଘନିଆ : କ'ଣ କହିଲୁ ଦାଦୀ । ତୋ ବାପର ଭାଇ ? ଶଳା ହାଡ଼ ଭାଙ୍ଗି ମୁଣ୍ଡଝାଳ ତୁଣ୍ଡରେ ମାରି ତୋତେ ପୋଷୁଛି । ନିଜେ ନ ଖାଇ ଖୁଆଇଛି, ନିଜେ ନ ପିନ୍ଧି ପିନ୍ଧଉଛି, ଏତେ ପରେ ବି ମୋତେ ଡାକିବୁ ଦାଦୀ, ବାପକୁ ଦାଦୀ ବଦମାସ, ନିମକହାରାମ୍ । ତୋ ଚମଡ଼ା ଉତାରିବି ତା'ପରେ ତାଙ୍କୁ ହାଣିବି, ଶଳା (ପିଟେ, ଏହି ସମୟରେ ଆସନ୍ତି ପ୍ରସନ୍ନ ସାର୍)

ପ୍ରସନ୍ନ : କିରେ କିରେ ସନିଆ । କ'ଣ କରୁଛୁ, ପିଲାଟାକୁ ମାରି ଦେବୁ ନା କ'ଣ ?

ସନିଆ : ମୋତେ କିଛି କୁହନି ସାର୍ । ମୋ ମୁଣ୍ଡରେ ଆଜି ଭୂତ ସବାର ହେଇଛି । ମୁଁ କିଛି ଶୁଣିବିନି ।

ପ୍ରସନ୍ନ : କାହିଁକି ? କ'ଣ ହେଲା କହ ?

ସନିଆ : କ'ଣ ଆଉ କହିବି ସାର୍, ଇଏ ଏଡ଼ିକି ବକଟେ ଝିଅ । ମୁଁ ତା' ବାପ, ମୋତେ କହିବ ଦାଦୀ ।

ପ୍ରସନ୍ନ : ଦାଦୀ ?

ଲକ୍ଷ୍ମୀ : ନା ସାର୍ ମୋତେ ମୋ ମାଆ ନାଇ ମାମି କହିଲା ବାପାକୁ ଏଣିକି ଡାଡି ଡାକିବୁ ।

ସନିଆ : ହଁ ମାମି କହିଲା, ମାମି କହିଦେଇ ମାମୁଁକୁ ନେଇ ମନ୍ଦିର ପଳେଇଲା । ବାହା ହେବାକୁ, ମୋତେ ଏଇ କାର୍ଡ଼ଟେ ଦେଇ ମୁଁ ଭୋଜି ଖାଇବାକୁ ଯିବି । ବୁଝିଲେ ସାର୍ କାହା ଦିହ ସହିବ ।

ପ୍ରସନ୍ନ : ତୋ ସ୍ତ୍ରୀ ତା' ଧରମ ଭାଇ ସହିତ ପଳେଇଲା ?

ସନିଆ : ଏଇ ଦେଖୁନ, କାର୍ଡ଼ ବି ଦେଇ ଯାଇଛି । ମୁଁ ଭୋଜି ଖାଇବାକୁ ଯିବି । (ପ୍ରସନ୍ନ କାର୍ଡ଼ଟେ ନେଇ ପଢ଼ନ୍ତି ଏହି ସମୟରେ ହସିହସି ଘନିଆ ଓ କମଳା ଆସନ୍ତି ।)

କମଳା : କ'ଣ ହେଉଛି ?

ସନିଆ : କଅଣ ହେଇଛି, ସେଇଠି ଠିଆ ହ, ଏ ଭିତରକୁ ଆ'ନା ସେ ଶଳା ଘନିଆ କାହିଁ ? ହାଣି ଦେବି ।

କମଳା : କଅଣ ହେଉଛି ?

ସନିଆ : ଆହା କିଛି ଜାଣେନି ।

ଲକ୍ଷ୍ମୀ : ମାଆ ବାପାକୁ ନା ଡାଡି ଡାକିଲାରୁ ବାପା ରାଗିକି ମୋତେ ପିଟୁଛନ୍ତି ।

କମଳା : ଓ ଏଇ କଥା, ଏଗୁଡ଼ା ଇଂଲିଶି କଥା ତ ସେ ବୁଝିପାରି ନାହାନ୍ତି ।

ସନିଆ : କଅଣ କହିଲୁ, ଇଂଲିଶ୍ କଥା, ମୁଁ ବୁଝିପାରିନି, ମୋତେ ବୁଝଉଛୁ । କେ ଇଂଲିଶ୍‌ରେ ବାପକୁ ଦାଦୀ କହନ୍ତି ?

ପ୍ରସନ୍ନ : ଆରେ ଦାଦୀ ନୁହେଁ ଡାଡି ।

ସନିଆ : ସାର୍ ଆପଣ ବି ମୋତେ ଭକୁଆ ବନେଇଲେ, ମାଆକୁ ମାମି ବାପାକୁ ଦାଦୀ ଆଉ ମାମୁକୁ

ପ୍ରସନ୍ନ : ଅଂକଲ ।

ଘନିଆ : ମୋତେ ବି ଅଂକଲ ଡାକୁଥିଲା । ମୁଁ ମନାକଲି ମୁଁ କହିଲି ଦାମବାବୁ ଘର ପିଲାମାନେ ତାଙ୍କ ଚାକର ଟୋକାକୁ ଅଂକଲ ଡାକନ୍ତି ତେଣୁ ମୋତେ ଅଂକଲ ଡାକିଲେ ମୁଁ ଜମା ଶୁଣିବିନି- ମୋତେ ମାମୁ ଡାକ ମାମୁ ।

ସନିଆ : ହଁ, ମାମୁ ନ ଡାକିଲେ ମାମି ସାଙ୍ଗରେ ପଟିବ କେମିତି ?

କମଳା : ଏୟ ଏମିତି କ'ଣ କହୁଛ ?

ସନିଆ : ଚୁପ୍ ! କହୁଛି କ'ଣ ଏତେବେଳକୁ ତମ ଦି'ଟାଙ୍କୁ

ସନିଆ : ଏଇ ଯେ ଡ୍ରେସ୍ ପିନ୍ଧିଛୁ କିଏ ଦେଇଛି ? ମୁଁ ତ ଆଣିନି, ଘନିଆ କିଣି ଦେଇଛି ନା ? କହ ସତ କହ ।

କମଳା : ଏ ଡ୍ରେସ୍‌ଟା ଲୁସି ମାଆଙ୍କର... ତାଙ୍କୁ ସାନ ହେଲା ତ

ସନିଆ : ଲୁସି ମାଆର ? ତୁ ତାଙ୍କଠୁ ମାଗି ଆଣି....

କମଳା : ତାଙ୍କୁ ସାନ ହେଲା ବୋଲି

ସନିଆ : ତା' ମାନେ... ମୁଁ ମୋ ମେହେନତି ଧନରେ କିଣି ଆଣିଥିବା । କସ୍ତାଶାଢ଼ୀକୁ ଫିଙ୍ଗି ଦେଇ ତା'ର ପାଲଟଣା ପିନ୍ଧିଲୁ ? ନିଜ ସ୍ୱାମୀକୁ ଛାଡ଼ି ଧରମ ଭାଇ ସହିତ ବୁଲିଲୁ ।

କମଳା : ଏୟ ତମ ଗୋଡ଼ ଧରୁଛି ତମେ ସେମିତି କୁହନି -

ଘନିଆ : ସନିଆ ! ତୁ ଏଡ଼େ ଛୋଟ ଲୋକ

ସନିଆ : ବେୟ ମୁହଁ ସମ୍ଭାଳି କଥା କହ୍ ନ୍ ହେଲେ ।

ପ୍ରସନ୍ନ : ଏଯେ ରୁହ ରୁହ ଏଠି ସନିଆ ଛୋଟ ନୁହେଁ କି ଘନିଆ ଛୋଟ ନୁହେଁ ।

କମଳା : ଆଉ କ'ଣ ମୁଁ ଛୋଟ ।

ପ୍ରସନ୍ନ : ତମେ କେହି ଛୋଟ ନୁହଁ, ତମ ଫେସନ୍ ଛୋଟ ।

ସମସ୍ତେ : ଫେସନ୍ ?

ପ୍ରସନ୍ନ : ହଁ ସନିଆ ଯାହା କହିଲା ନିଜ ଶାଢ଼ୀ ଛାଡ଼ି ପର ପାଲଟଣା ପିନ୍ଧିବା ଯାହା, ନିଜ ସ୍ୱାମୀ ଛାଡ଼ି ଧରମ ଭାଇ ସହିତ ବୁଲିବା ଯାହା ମାତୃଭାଷାକୁ ଛାଡ଼ି ପରଭାଷାକୁ ଲୋଡ଼ିବା ସେଇଆ ।

ସନିଆ ଓ ଘନିଆ : ମାନେ ?

ପ୍ରସନ୍ନ : ଏ ଘର ଓଡ଼ିଆର ଘର । ତମେ ସବୁ ବାପ, ଅଜା ଅମଳରୁ ଓଡ଼ିଆ କହୁଛ, ଶୁଣୁଛ ଆଉ ବୁଝୁଛ । ଓଡ଼ିଆ ଯେମିତି ସହଜରେ ହଜମ କରିପାରିବ, ଯା ତା'ଠୁ ଦେଖି ଶୁଣି ଇଂଲିଶ୍ କହିଲେ ପାରିବନା ? ଖାଲି ବଦହଜମୀ ହବ ଯେମିତି ଆଜି ହେଲା । ମୁଁ ନ ଆସିଥିଲେ କ'ଣ ନାଇଁ କ'ଣ ଘଟିଯାଇ ଥାଆନ୍ତା ।

ଘନିଆ : ନାଇଁ ଆଜ୍ଞା ଏ ସନିଆଟା ମୂର୍ଖଟା ଟିକେ କଥାକୁ ରାଗିକି ଲାଲ ।

ସନିଆ : ଆଉ, ଲାଲ ହେବନି – ତମେ ଦି'ଜଣ ମନ୍ଦିର ପଳେଇବ ବାହା ହବାକୁ ମୋତେ ଖଣ୍ଡେ କାର୍ଡ଼ ଧରେଇ ଦେଇ ମୁଁ ରାଗିବିନି ।

ଘନିଆ : ସେ କାର୍ଡ଼ରେ କ'ଣ ଆମ ବାହାଘର ବୋଲି ଲେଖା ହେଇଛି ।

ସନିଆ : ବେ କାର୍ଡ଼ ତ ଇଂଲିଶ୍‌ରେ ଲେଖିଛ, ମୁଁ ପଢ଼ି ପାରିଲେ ସିନା ଜାଣିବି ।

ପ୍ରସନ୍ନ : ବାସ୍ ବାସ୍ ଏଇଠି ହେଉଛି ସମସ୍ୟା । ହଇଓ ଘନିଆ ତମେ ଇଂଲିଶ୍ ଜାଣିଛ ।

ଘନିଆ : ନାଇଁ ।

ପ୍ରସନ୍ନ : ଯାହାକୁ କାର୍ଡ଼ ଦେଲ ସେ ଇଂଲିଶ୍ ଜାଣିଛି ।

ଘନିଆ : ସେ ଜାଣିଥିଲେ ଏମିତି କାଣ୍ଡ କରିଥାଆନ୍ତା ନା ?

ପ୍ରସନ୍ନ : ବାସ୍ ଯିଏ କାର୍ଡ଼ ଦଉଛି ସେ ଇଂଲିଶ୍ ଜାଣେନି ଯାହାକୁ କାର୍ଡ଼ ଦଉଛ ସେ ଇଂଲିଶ୍ ଜାଣେନି - ତା'ହେଲେ କାର୍ଡ଼ କାହିଁକି ଇଂଲିଶ୍‌ରେ ଛାପୁଛ ?

ଘନିଆ : ଖାଲି ଗୋଟେ ଫେସନ୍ ।

ପ୍ରସନ୍ନ : ଏସବୁ ବାଦେ ଫେସନ୍ ବନ୍ଦ୍ କର । ଆରେ ବାପାକୁ ବାପା ଡାକିବାରେ ଯେଉଁ ଆନନ୍ଦ ମାଆକୁ ମାଆ ଡାକିବାର ଯେଉଁ ଆନନ୍ଦ ଅଛି ଡାଡି ମାମିରେ ସେ ଆନନ୍ଦ ଅଛି ?

ଘନିଆ : ନା ଏଇ କାର୍ଡ଼ ସବୁ ଅନର୍ଥର ମୂଳ ଏ କାର୍ଡ଼ ସବୁ ଚିରିଲି ଓଡ଼ିଆରେ ଛାପିକି ଆଉ ଥରେ ବାଣ୍ଟିବି ।

ପ୍ରସନ୍ନ : ଆରେ କଥାରେ ପରା ଅଛି - ଆମ ଭାଷା ଆମ ଓଡ଼ିଆ ଭାଷା ।

ଆମ ମାଆର ଭାଷା ।

**ଲକ୍ଷ୍ମୀ ଗାଇଲୁ -**

ଆମ ଓଡ଼ିଆ ଭାଷା ଆମ ମାଆର ଭାଷା

ଆମ ଜଗନ୍ନାଥ ଆମ ସାହା ଭରସା ।

**- ଅନ୍ଧାର -**



ସଂପ୍ରତି ଓଡ଼ିଆ ନାଟ୍ୟ ସାହିତ୍ୟରେ ହେମେନ୍ଦ୍ର ମହାପାତ୍ର ଏକ ଚର୍ଚ୍ଚିତ ନାମ ।
ଦୀର୍ଘ ଚାରି ଦଶକର ନାଟ୍ୟ ସାଧନାରେ ସେ ସୃଷ୍ଟି କରିଛନ୍ତି
ଶତାଧିକ ନାଟକ, ଗୀତିନାଟ୍ୟ, ନୃତ୍ୟ ନାଟିକା,
ଭିଡିଓ ନାଟକ, ରେଡିଓ ନାଟକ, ଟେଲିଫିଲ୍ମ ଓ ଧାରାବାହିକ ।
ତାଙ୍କ ସାମଗ୍ରିକ ସୃଷ୍ଟି ପାଇଁ ତାଙ୍କୁ ଓଡ଼ିଶାର ବହୁ
ସାରସ୍ୱତ ଅନୁଷ୍ଠାନ ପୁରସ୍କୃତ ଓ ସମ୍ମାନୀତ କରିଛନ୍ତି ।
ବିଶେଷ କରି ତାଙ୍କ ବହୁ ଚର୍ଚ୍ଚିତ ନାଟକ 'ଯୁଗ ଚରିତ ବୃତ୍ତାନ୍ତ' ପାଇଁ ତାଙ୍କୁ
ମିଳିଛି ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ।
ଶ୍ରୀ ମହାପାତ୍ର ଓଡ଼ିଆ ନାଟ୍ୟ-ସାହିତ୍ୟର ସମୃଦ୍ଧି ନିମନ୍ତେ ପ୍ରତିଶ୍ରୁତି ବଦ୍ଧ ।
ସଂପ୍ରତି ସେ ଓଡିଶାର ଅନ୍ୟତମ ସଂଭ୍ରାନ୍ତ ନାଟ୍ୟ ସଂସ୍ଥା 'ସ୍ରଷ୍ଟା'ର
ସାଧାରଣ ସମ୍ପାଦକ ଥିବାବେଳେ
ଓଡିଆ ଭାଷାର ସର୍ବ ପ୍ରଥମ ଦୃଶ୍ୟ ଭିତ୍ତିକ ସାହିତ୍ୟ ପତ୍ରିକା
ରଂଗମଂଚର ପରିକଳ୍ପନା ଓ ପ୍ରଯୋଜନା କରୁଛନ୍ତି । ତାଙ୍କର ଏହି ସୃଷ୍ଟି ସମୂହକୁ ନେଇ
ଗବେଷଣା କାର୍ଯ୍ୟ ମଧ୍ୟ ଆରମ୍ଭ ହୋଇ ଯାଇଛି ।

